# ବଳରାମ ଦାସଙ୍କ
## ଶ୍ରେଷ୍ଠ କାବ୍ୟକୃତି

ଜଗମୋହନ ରାମାୟଣ ଏ ଅଟଇ ପୁଣ୍ୟ ନାମ



ସଂପାଦନା
ପ୍ରଦୀପ୍ତ କୁମାର ପଣ୍ଡା

ଭାରତୀୟ ସାହିତ୍ୟନିଧି

# ବଳରାମ ଦାସଙ୍କ ଶ୍ରେଷ୍ଠ କାବ୍ୟକୃତି

## ଜଗମୋହନ ରାମାୟଣ ଏ ଅଟଇ ପୁଣ୍ୟ ନାମ

ସଂପାଦନା

ପ୍ରଦୀପ୍ତ କୁମାର ପଣ୍ଡା




ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ISBN 978-81-237-8768-8
ପ୍ରଥମ ସଂସ୍କରଣ 2019 (ଶକାବ୍ଦ 1940)

Balaram Dasanka Shrestha Kabyakruti (*Odia Original*)
**₹ 415.00**
ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, 5, ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍ - II
ବସନ୍ତକୁଞ୍ଜ, ନୂଆ ଦିଲ୍ଲୀ - 110070 କର୍ତ୍ତୃକ ପ୍ରକାଶିତ
Website : www.nbtindia.gov.in

# ସୂଚୀ

**ଆରଣ୍ୟକ କାଣ୍ଡ**



**କିଷ୍କିନ୍ଧ୍ୟା କାଣ୍ଡ**



**ସୁନ୍ଦରା କାଣ୍ଡ**

<u>ଲଙ୍କା କାଣ୍ଡ</u>

**ଉତ୍ତରା କାଣ୍ଡ**





# ଗ୍ରନ୍ଥ ପ୍ରବେଶ

ଷୋଡ଼ଶ ଶତାବ୍ଦୀର ବଙ୍ଗୀୟ ପଦକାର ଦେବକୀନନ୍ଦନ ଦାସ ତାଙ୍କ ସମୟର ବିଶିଷ୍ଟ ବୈଷ୍ଣବ ସନ୍ନ୍ୟାସୀମାନଙ୍କର ଏକ ବନ୍ଦନା ଲେଖିଥିଲେ । ସେଥିରେ ଓଡ଼ିଆ ବଳରାମ ଦାସଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ –

"ବନ୍ଦେ ଉଡ଼ିଆ ବଳରାମ ଦାସ ମହାଶୟ
ଜଗନ୍ନାଥ ବଳରାମ ଯା'ର ବଶ ହୟ ।"

ଓଡ଼ିଶାର ପରିସୀମା ଅତିକ୍ରମ କରି ବଙ୍ଗୀୟ ବୈଷ୍ଣବମାନଙ୍କୁ ପ୍ରଭାବିତ କରିଥିବା ଏହି ଉଡ଼ିଆ 'ବଳରାମ ଦାସ' ହେଉଛନ୍ତି ଓଡ଼ିଶାର ଘରେ ଘରେ ସୁପରିଚିତ ଜଗମୋହନ ରାମାୟଣ/ଦାଣ୍ଡୀ ରାମାୟଣର ରଚୟିତା ବଳରାମ । ଯଦିଓ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନ୍ୟ ଅନେକ କବିଙ୍କ ପରି ବଳରାମ ମଧ୍ୟ ଜଣେ/ଦୁଇଜଣ/ତିନିଜଣ ଥିବା ସନ୍ଦେହରୁ ମୁକ୍ତ ନୁହନ୍ତି, କିନ୍ତୁ ଦାଣ୍ଡୀ ରାମାୟଣକାର ବଳରାମଙ୍କୁ ନେଇ ହିଁ ଓଡ଼ିଶାର ଭକ୍ତସମାଜ ଓ ଜଗନ୍ନାଥ ଉପାସନାଧାରାର ଯେତେ ସବୁ କାହାଣୀ/କିମ୍ବଦନ୍ତୀ ଗଢ଼ି ଉଠିଛି ; ବଙ୍ଗୀୟ ପଦକର୍ତ୍ତା ବୈଷ୍ଣବ ମତ୍ତ ବଳରାମ ଓ ପରବର୍ତ୍ତୀ ସମୟରେ ଛତିଶ ଗୁପ୍ତ ଗୀତା, ବିରାଟ ଗୀତା, ଗୁପ୍ତ ଗୀତା (ଟୀକା), ଅମରକୋଷ ଗୀତା ପ୍ରଭୃତି ତତ୍ତ୍ୱ ଗ୍ରନ୍ଥ ଲେଖିଥିବା ଦୈବଜ୍ଞ ବଳରାମଙ୍କୁ ଆଜି କବି ବଳରାମ (ଜଗମୋହନ ରାମାୟଣର ରଚୟିତା)ଙ୍କ ଠାରୁ ଭିନ୍ନ ଦର୍ଶାଇବା ଅତ୍ୟନ୍ତ ଆୟାସସାଧ୍ୟ ହୋଇପଡ଼ିଛି । ଓଡ଼ିଆ ଲୋକଙ୍କର ସରଳ ବିଶ୍ୱାସରେ ସବୁ ବଳରାମ ନାମଧାରୀ କବି-ଭକ୍ତ-ସନ୍ଥ ଯେମିତି ଜଣେରେ ପରିଣତ ହୋଇ ଯାଇଛନ୍ତି । ଓଡ଼ିଆ ସାହିତ୍ୟର ଆଲୋଚକଗଣ ତାଙ୍କୁ ପଞ୍ଚଦଶ ଶତାବ୍ଦୀର ଅପରାର୍ଦ୍ଧ (୧୪୭୩ ରୁ ୧୪୭୮ ମଧ୍ୟରେ)ରେ ପୁରୀଜିଲା ନିକଟବର୍ତ୍ତୀ ଏବରଙ୍ଗ ଗ୍ରାମରେ ଜନ୍ମ ନେଇଥିବା ସ୍ୱୀକାର କରନ୍ତି । ସେତେବେଳେ ଓଡ଼ିଶାରେ ସୂର୍ଯ୍ୟବଂଶୀ ଗଜପତିମାନେ ଶାସନ କରୁଥିଲେ । ସୂର୍ଯ୍ୟବଂଶରେ ଓଡ଼ିଶାରେ ତିନିଜଣ ପ୍ରମୁଖ ରାଜା ଶାସନ କରିଥିବାର ଇତିହାସରୁ ସୂଚନା ମିଳେ । ସେମାନେ ହେଲେ ୧. କପିଳେନ୍ଦ୍ର ଦେବ (୧୪୩୫-୧୪୬୮), ୨. ପୁରୁଷୋତ୍ତମ ଦେବ (୧୪୬୮-୧୪୯୭), ୩. ପ୍ରତାପରୁଦ୍ର ଦେବ (୧୪୯୭-୧୫୩୮) । ଓଡ଼ିଶାର ରାଜନୀତି, ଅର୍ଥନୀତି, ଶାସନନୀତି, ସାହିତ୍ୟ, ସଂସ୍କୃତି ଓ ସମାଜଜୀବନର ଏହା ଥିଲା ସୁବର୍ଣ୍ଣ ଯୁଗ । ଏହି ବଂଶର ପ୍ରତିଷ୍ଠାତା ସମ୍ରାଟ କପିଳେନ୍ଦ୍ର

ଦେବ ଯୁଦ୍ଧରେ ଯେପରି ପାରଙ୍ଗମ ଥିଲେ ; କଳା, ସାହିତ୍ୟ, ସ୍ଥାପତ୍ୟ ଆଦିର ପ୍ରୋତ୍ସାହନ ପ୍ରଦାନରେ ସେପରି ଉଦାରହୃଦୟ ଥିଲେ । ଓଡ଼ିଆ ସାହିତ୍ୟର ଆଦିକବି ଶୂଦ୍ରମୁନି ସାରଳା ଦାସ ଥିଲେ ଏହି ଦିଗ୍‌ବିଜୟୀ ସମ୍ରାଟଙ୍କ ସମସାମୟିକ । ଲୋକମୁଖର କଥିତ ଭାଷାକୁ ଅମାପ ଶକ୍ତି ପ୍ରଦାନ କରି ମହାକବି ସାରଳା ସାହିତ୍ୟର ଭାଷାରେ ରୂପାନ୍ତରିତ କରିଥିଲେ । ରଚିତ ହେଲା 'ବିଚିତ୍ର ରାମାୟଣ', 'ମହାଭାରତ' ଓ 'ଚଣ୍ଡୀପୁରାଣ' ପରି ମହାଗ୍ରନ୍ଥ । ସେଇ ଲୋକକଥିତ ଭାଷାରେ କଳ୍ପନାଜଳ୍ପନା, ଅଳଙ୍କାର ସୃଷ୍ଟି, ଚରିତ୍ରାୟନ, ନାଟକୀୟ ବାକ୍‌ଭଙ୍ଗୀର ବିକାଶ ସାରଳାଙ୍କ ସୃଷ୍ଟିକୁ କ୍ଲାସିକ୍‌ର ମାନ୍ୟତା ପ୍ରଦାନ କରିଛି । ମହାକବି ବଳରାମ ଦାସ ଥିଲେ ଯଥାର୍ଥରେ ଆଦିକବି ସାରଳାଙ୍କର ଉତ୍ତରସାଧକ । ସାରଳାଙ୍କ ଲୋକଭାଷାକୁ ବଳରାମ ଅଧିକ ସ୍ୱଚ୍ଛ, ସ୍ନିଗଧ ଓ ଗତିଶୀଳ କରାଇ ପୁରାଣ ରଚନା କରିବା ସହିତ ରଚନା କଲେ ଭଗବତ୍ ଗୀତା, ବେଦାନ୍ତ ସାର ଆଦି ଅନେକ ଜ୍ଞାନଗ୍ରନ୍ଥ ଏବଂ 'କମଳ ଲୋଚନ ଶ୍ରୀହରି' ପରି କେତେ କ୍ଷୁଦ୍ର ଗୀତିକା ଯାହା ଓଡ଼ିଆ ଭାଷା ଶିକ୍ଷା ନିମନ୍ତେ ସେକାଳର କିଶୋରମାନଙ୍କ ଲାଗି ବ୍ୟବହୃତ ହେଉଥିଲା ।

ଓଡ଼ିଆ ମାଟିରେ ସନ୍ଥ ପରମ୍ପରାର ଆଦ୍ୟ ଓଁକାର ଥିଲେ ମହାକବି ବଳରାମ ଦାସ । ତାଙ୍କ ପୂର୍ବରୁ ସାମାଜିକ ଜୀବନରେ ସୃଷ୍ଟି ହୋଇଥିବା ସକଳ ଜଡ଼ତା ବିରୁଦ୍ଧରେ ସେ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ । ଏଥିପାଇଁ ତାଙ୍କୁ ଅବକ୍ଷୟମୁଖୀ ସ୍ୱାର୍ଥସର୍ବସ୍ୱ ବ୍ରାହ୍ମଣ୍ୟଗୋଷ୍ଠୀଙ୍କର କଠୋର ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସାମାଜିକ ଓ ସାଂସ୍କୃତିକ ଜୀବନରେ ଜନ୍ମଗତ କାରଣରୁ ଶ୍ରେଷ୍ଠତା ଦାବି କରିଆସୁଥିବା ବ୍ରାହ୍ମଣ ସମାଜ କଦାପି ତାଙ୍କ ସ୍ଥାନରେ କୌଣସି ବ୍ରାହ୍ମଣେତର ବ୍ୟକ୍ତିକୁ ଦେଖିବାକୁ ଇଚ୍ଛା କରୁ ନଥିଲେ । ଏହି ସମୟର ରାଜାଗଣ ମଧ୍ୟ ସୁବିଧାବାଦୀ, ସ୍ୱାର୍ଥସର୍ବସ୍ୱ ଓ ବିଳାସପ୍ରିୟ ଥିବାରୁ ସାଧାରଣ ଜୀବନ ଉପରେ ଏହାର ବିଶେଷ ପ୍ରଭାବ ପଡୁଥିଲା । ଅବହେଳିତ ଶୂଦ୍ର ଜାତି ଅଧିକରୁ ଅଧିକ ନିଷ୍ପେସିତ ହେବାକୁ ଲାଗିଲେ । କୌଣସିମତେ ଜୀବନଧାରଣ ପୂର୍ବକ ଉଚ୍ଚଜାତିର ଲୋକଙ୍କ ସେବାକରି ମୃତ୍ୟୁବରଣ କରିବା ଏମାନଙ୍କ ଭବିତବ୍ୟରେ ପରିଣତ ହେଲା । ଧର୍ମ ଓ ସଂସ୍କୃତି ନାମରେ ଚାରିଆଡ଼େ ଦେଖାଗଲା ଠକାମି ଓ ଭଣ୍ଡାମି । ଠିକ୍ ଏହି ସମୟରେ ସାଧାରଣ ସମାଜକୁ ଅବକ୍ଷୟରୁ ରକ୍ଷା କରିବା ପାଇଁ 'କବୀର' ଭଳି ସନ୍ଥ ସନ୍ନ୍ୟାସୀମାନଙ୍କର ଆବିର୍ଭାବ ହେଲା । ଜାତି, ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟର ଉର୍ଦ୍ଧ୍ୱକୁ ଯାଇ ସେମାନେ ମାନବତାବାଦର ପ୍ରଚାର କଲେ । ସାଧାରଣ ମଣିଷଟିଏ କିପରି ଆପଣା ଜୀବନକୁ ଆଧ୍ୟାତ୍ମିକତାରେ ଦୀକ୍ଷିତ କରିପାରିବ ଓ ଚରମ ଆନନ୍ଦ ଲାଭ କରିପାରିବ ସେମାନେ ତାହାର ମାର୍ଗ ଆବିଷ୍କାର କଲେ । ବ୍ରାହ୍ମଣ୍ୟବାଦର ମଧ୍ୟସ୍ଥତାକୁ ଉଚ୍ଛେଦ କରି ମଣିଷ ପ୍ରତ୍ୟକ୍ଷ ସାଧନା ବଳରେ କିପରି ଈଶ୍ୱରୋପଲବ୍ଧି କରିପାରିବ ତାହା ପ୍ରଚାର

କଲେ । ଫଳସ୍ୱରୂପ ସାଧାରଣ ମଣିଷର ଆଧ୍ୟାତ୍ମିକ ତୃଷ୍ଣାର ପରିତୃପ୍ତି ଲାଗି ପ୍ରାଦେଶିକ ଭାଷାରେ ରଚିତ ହେଲା ରାମାୟଣ, ମହାଭାରତ, ଭାଗବତ ଆଦି ଗ୍ରନ୍ଥ । ଓଡ଼ିଶାରେ ସାରଳାଙ୍କ ପରେ କବି ବଳରାମ ଥିଲେ ଏଇ ସନ୍ଥ ପରମ୍ପରାର ଜଣେ ଯଥାର୍ଥ ଦିଶାରି ।

ସ୍ୱୟଂ ବଳରାମ ସମାଜର ତଥାକଥିତ ସେଇ ଅଭିଜାତ ସମ୍ପ୍ରଦାୟର ବ୍ୟକ୍ତି ଥିଲେ । ତାଙ୍କ ପିତା ସୋମନାଥ ମହାପାତ୍ର ଥିଲେ ଗଜପତି ପ୍ରତାପରୁଦ୍ର ଦେବଙ୍କର ଜଣେ ମନ୍ତ୍ରୀ । ବଳରାମ ବାଲ୍ୟବୟସରୁ ଏଇ ପିତୃପ୍ରଦତ୍ତ ସାମନ୍ତୀୟତାକୁ ପରିହାର କରି ଜଣେ ସାଧାରଣ ମଣିଷର ବୃତ୍ତିକୁ ଆପଣେଇ ନେଇଥିଲେ । ବଳରାମଙ୍କ ଜୀବନୀକାର ରାମଦାସ କବିଙ୍କ ସମ୍ପର୍କରେ ତାଙ୍କ 'ଦାର୍ଢ୍ୟତା ଭକ୍ତି' ଗ୍ରନ୍ଥରେ ଲେଖିଛନ୍ତି –

''ପୁରୁଷୋତ୍ତମେ ତା'ର ଘର
କୁଟୁମ୍ବ ଘେନି ସଙ୍ଗତର ।
ଉତ୍ତମ ଜନେ ଆଶ୍ରା କରି
ନିତି ବୁଲଇ ଭିକ୍ଷା କରି ।''

ବଳରାମ ପିତାଙ୍କ ସମ୍ପତ୍ତି ପରିତ୍ୟାଗ କରି ଭିକ୍ଷାବୃତ୍ତିରେ ପୁରୀ ସହରରେ ଜୀବିକା ନିର୍ବାହ କରୁଥିଲେ । ତେବେ କବି ଆପଣାର 'ଜଗମୋହନ ରାମାୟଣ' ଗ୍ରନ୍ଥର 'ଉତ୍ତରା କାଣ୍ଡ'ରେ ନିଜ ବିଷୟରେ କେତେକ ସଂକ୍ଷିପ୍ତ ସୂଚନା ଦେଇଛନ୍ତି । ତାହା ଏହିପରି –

''ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଦିବ୍ୟରସ, ପଣ୍ଡିତ ଲୋକମାନେ ନଧରିବା ଦୋଷ ।
ଅଜ୍ଞାନପଣେ ଅବା ବଖାଣ କଲି ଯାହା, ଶୁଣିଣ ସୁଗ୍ୟଂଜନେ ଉପେକ୍ଷା କର ତାହା ।
ଜପ ତପ ଦାନ ନାମ ସୁମରଣ, ଏକଥାମାନ ଯହୁଁ ନୁହଇଂ ପୂରଣ ।
ଚଣ୍ଡାଳ ଜୀବନ ଏ ଚଞ୍ଚଳ ପ୍ରକୃତି, ପାପପୂଣ୍ୟ ବୋଲିଣ ନ ବିଚାରଇ ମତି ।
ଅନ୍ୟାଏ କଥାମାନ ମଣଇ ପରମ ହିତ, ବାସୁଦେବ ସୁମରଣା ନକରଇ କଦାଞ୍ଚିତ ।
ତେଣୁକରି ଆତ୍ମା ତାରିବା ନିମନ୍ତେ, ଶ୍ରୀରାମ ଚରିତ ମୁଂ କହିଲି ତୋ ଅଗ୍ରତେ ।
ମହାମନ୍ତ୍ରୀ ସୋମନାଥ ମହାପାତ୍ର, ବଳରାମ ଦାସ ମୁଂ ଅଟଇ ତାର ସୁତ ।
ଜନ୍ମେ ଜନ୍ମେ ମୁଂ ଶ୍ରୀହରିର ସେବକ, ଇଚ୍ଛା କଲି ଆସି ଜନ୍ମିଲି ମୃତ୍ୟୁଲୋକ ।
ମନମାୟା ନାମେ ଜନନୀର ଗର୍ଭୁଂ, ଜନ୍ମ ହୋଇ ମୁଂ ଚିନ୍ତିଲି ମହାପ୍ରଭୁ ।
ନୀଳଗିରିରେ ଶ୍ରୀପୁରୁଷୋତ୍ତମ ବିଜୟେ, ନୀଳ ବଦନ ଶଙ୍ଖଚକ୍ର ନିଜ କାଏ ।

x x x

ତାହାଙ୍କ ପ୍ରସନ୍ନେ ଶାରଦା ଦୟାକଲେ, ରାମାୟଣ ଗ୍ରନ୍ଥ ମୋର ମୁଖରୁ ଉଚ୍ଚାରିଲେ ।

x x x

ସେ ପ୍ରଭୁ କବିତ୍ୱ ଅଟଇ ଏଥିର, ଲୋଭେ ମୋହୋର ନାମ ଭଣାଇଲି ଗ୍ରନ୍ଥର ।

ପଣ୍ଡିତ ଜନ ଶୁଣି ନଧର ମୋର ଦୋଷ, ସମୁଦ୍ର ପହଂରିବାକୁ କଲଇଂ ସାହସ ।

x x x

ଜନ୍ମେଣ ଶୂଦ୍ର ମୁଂ ଅଳପ ବଏସ, ଗ୍ରନ୍ଥ କରିବା କାଳେ ବୟସ ବତିଶ ।
ଦାରା ସୁତ ଧନ ସୁଖଭୋଗ ଶିରୀ, ଅରୋଗୀ ଦାତାପଣ ଦେଇଛନ୍ତି ହରି ।
ଏ ମର୍ତ୍ତ୍ୟଲୋକେ ମୁଂ ଜଗନ୍ନାଥଙ୍କୁ ସେବିବି, ଇଚ୍ଛା ହୋଇଲେ ପୁଣ ବୈକୁଣ୍ଠକୁ ଯିବି ।
ସ୍ୱାମୀର ସେବକ ମୁଂ ସନ୍ନିଧେଣ ଖଟି, ଏ ଭବ ସାଗରେ ମୋତେ ନୁହଇଂ ନା ଲଟି ।
ନୀଳଗିରି ନାଥଙ୍କୁ ସର୍ବଦା ମୋର ଆଶ, ଶ୍ରୀଜଗନ୍ନାଥେ ଶରଣ ମୁଂ ବଳରାମ ଦାସ ।"

*କବି ଜଗନ୍ନାଥଙ୍କର ଜଣେ ସାଧାରଣ ସେବକ ଥିଲେ । ତାଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମାତା ମନମାୟା ଦେବୀ । ଜଗନ୍ନାଥଙ୍କ ଦୟାରୁ ସେବକତ୍ୱର ଅଧିକାରୀ ହୋଇଥିଲେ । ତାଙ୍କର ଜପ, ତପ, ଦାନ, ନାମ ସ୍ମରଣ ଆଦି କିଛି ପୁଣ୍ୟ କର୍ମ ନଥିଲା । ଜଣେ ଚଣ୍ଡାଳ ପରି ଚଞ୍ଚଳ ପ୍ରକୃତିର ମନୁଷ୍ୟ ହୋଇ ସେ ବଞ୍ଚୁଥିଲେ । ପାପପୁଣ୍ୟର କିଛି ବିଚାର ତାଙ୍କଠାରେ ନଥିଲା । କେବଳ ସେଇ ପ୍ରଭୁଙ୍କର ଅଯାଚିତ କରୁଣାରୁ ସେ କବିତ୍ୱ ପ୍ରାପ୍ତ ହେଲେ । ରାମାୟଣ ଗ୍ରନ୍ଥ ତାଙ୍କ ମୁଖରୁ ସ୍ଫୁରିଲା । ମହାକବି ବାଲ୍ମୀକି ୨୪ହଜାର ଶ୍ଳୋକରେ ଲେଖିଥିବା ମହାଗ୍ରନ୍ଥକୁ ବଳରାମ ଲକ୍ଷେ ପଦରେ ରଚନା କଲେ । ସବୁ କବିତ୍ୱ ଜଗନ୍ନାଥ ପ୍ରଭୁଙ୍କର । ଖାଲି ଲୋଭବଶ ହୋଇ ସେ ନିଜ ନାମ ଭଣିତା କରିଅଛନ୍ତି । କବିଙ୍କୁ ୩୨ବର୍ଷ ବୟସ ହୋଇଥିବାବେଳେ ଏ ଗ୍ରନ୍ଥ ରଚିତ ହୋଇଥିଲା । ଜଗନ୍ନାଥଙ୍କ କୃପାରୁ ତାଙ୍କୁ ସବୁ ସୁଖ ମିଳିଛି । ସ୍ତ୍ରୀ, ପୁତ୍ର, ଧନ ଓ ସୁନ୍ଦର ସ୍ୱାସ୍ଥ୍ୟ ସବୁ ତାଙ୍କୁ ମିଳିସାରିଛି । ଜୀବନ ଥିବାଯାଏଁ ସେ ଜଗନ୍ନାଥଙ୍କ ସେବା କରିବେ ଏବଂ ମୃତ୍ୟୁ ପରେ 'ବୈକୁଣ୍ଠ'କୁ ଯିବେ ।*

ବଳରାମ ଦାସଙ୍କ ନାମରେ ମିଳୁଥିବା ଅନ୍ୟ ଗ୍ରନ୍ଥ 'ଶ୍ରୀମଦ୍ ଭଗବଦ୍ ଗୀତା', 'ବେଦାନ୍ତର ସାର ଗୁପ୍ତଗୀତା', 'ବଟ ଅବକାଶ', 'ପଣସ ଚୋରି', 'ଭାବ ସମୁଦ୍ର' ଆଦି ଏବଂ ବଳରାମଙ୍କ ଜୀବନୀ ସମ୍ପର୍କରେ ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି' ଗ୍ରନ୍ଥରେ ରାମାୟଣ ବର୍ଣ୍ଣିତ ସୁଖମୟ ଜୀବନର କେତେକ ବ୍ୟତିକ୍ରମ ଦେଖିବାକୁ ମିଳେ । ହୁଏତ ଏହା ହୋଇପାରେ ଯେ ରାମାୟଣ ରଚନା କରିବା ପରେ ବଳରାମଙ୍କ ଖ୍ୟାତି ବିଶେଷ ଭାବେ ବଢ଼ିଯାଇଥିଲା । ସେତେବେଳକୁ ତାଙ୍କ ପିତା ସୋମନାଥ ମହାପାତ୍ର ପରପାରିକୁ ଚାଲିଯାଇଥିଲେ । ବଳରାମଙ୍କ କବିମନସ୍କତା ତାଙ୍କୁ ରାଜ କର୍ମଚାରୀ କାର୍ଯ୍ୟ ପ୍ରତି ବିମୁଖ କରାଇଥିଲା । ଫଳତଃ ସେ ପୁରୀ ସହରରେ ଜଣେ ସାଧାରଣ ନାଗରିକ ଭାବେ ଜୀବନ ଯାପନ କରୁଥିଲେ । ଅଥଚ ତାଙ୍କର କବିକୀର୍ତ୍ତି ପୁରୀର ସାମନ୍ତ ବ୍ରାହ୍ମଣମାନଙ୍କ ପାଇଁ ଅସହ୍ୟ ବୋଧ ହେଉଥିଲା । ସେମାନେ ପ୍ରତି ପଦକ୍ଷେପରେ ବଳରାମଙ୍କୁ ବିରୋଧ କରୁଥିଲେ । ବିଷ୍ଣୁଭକ୍ତ, ସନ୍ଥ, ବହୁପାଠୀ ବଳରାମଙ୍କ ଜ୍ଞାନଗର୍ଭକ ସହଜ ଉପସ୍ଥିତି

ବ୍ରାହ୍ମଣମାନଙ୍କ ଲାଗି ହୋଇ ଉଠୁଥିଲା ଅସହ୍ୟ । ସେଥିପାଇଁ ସେମାନେ ରସିକ ଭକ୍ତ ବଳରାମଙ୍କୁ ଅପମାନିତ କରିବା ପାଇଁ ନିରନ୍ତର ଉଦ୍ୟମ କରୁଥିଲେ । ପୁଣି ବଳରାମ ଯେପରି ଓଡ଼ିଆରେ ଗ୍ରନ୍ଥସବୁ ରଚନା କରି ସାଧାରଣ ଲୋକଙ୍କୁ ଆଧ୍ୟାତ୍ମିକ ଜ୍ଞାନ ପ୍ରଦାନ କରୁଥିଲେ ତାହା ମଧ୍ୟ ଦିନକୁ ଦିନ ବ୍ରାହ୍ମଣମାନଙ୍କୁ ଉତ୍ତେଜିତ କରୁଥିଲା । ଫଳସ୍ୱରୂପ ଯେ ଅବ୍ରାହ୍ମଣମାନେ ତାଙ୍କୁ ଆଉ ମାନିବେ ନାହିଁ ଏ ଆଶଙ୍କାରେ ସେମାନେ ଜଡ଼ିତ ହେଉଥିଲେ । ଯାହାର ପରିଣତିସ୍ୱରୂପ କବିଙ୍କ ରଚନାରେ 'ବ୍ରାହ୍ମଣ-ବଳରାମ' ବିବାଦର ଅନେକ ଚିତ୍ର ଦେଖିବାକୁ ମିଳେ ।

- 'ଭଗବଦ୍ ଗୀତା'ରେ ବାଉରୀ ମୁଖରେ ତତ୍ତ୍ୱଜ୍ଞାନ ବର୍ଣ୍ଣନା
- 'ବେଦାନ୍ତସାର ଗୁପ୍ତଗୀତା'ରେ ବେଦାନ୍ତତତ୍ତ୍ୱକୁ ମୂକ ହରିଦାସ ମୁହଁରେ ପ୍ରକାଶ
- 'ଭାବ ସମୁଦ୍ର'ରେ ବାଲିରଥ ପ୍ରସଙ୍ଗ ଓ ରାଜାଙ୍କର କ୍ଷମା ପ୍ରାର୍ଥନା
- 'ବଟ ଅବକାଶ'ରେ ସୁନାଝରି ପ୍ରସଙ୍ଗ ... ଇତ୍ୟାଦି ।

ତେବେ କବି ବଳରାମଙ୍କ ପରିଚୟ ପର୍ବରେ ଏତିକି କୁହାଯାଇପାରେ ଯେ ଷୋଡ଼ଶ ଶତାବ୍ଦୀର ଅୟମାରମ୍ଭରେ ଉତ୍କଳୀୟ ସାମାଜିକ ଓ ସାଂସ୍କୃତିକ ଜୀବନରେ ଯେଉଁ ବିରାଟ ଅଭ୍ୟୁଦୟ ଦେଖାଦେଇଥିଲା, ସେ ଥିଲେ ତା'ର ଅନ୍ୟତମ ପଥିକୃତ୍ । ଜଗନ୍ନାଥ ଦାସ ଆଦି ଅନ୍ୟ ସନ୍ଥକବିଗଣ ସେହି ଆନ୍ଦୋଳନକୁ ଆଗେଇ ନେଇ ଓଡ଼ିଆ ସମାଜ, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏକ ସୁଦୃଢ଼ ଭିତ୍ତି ସ୍ଥାପନ କରିଥିଲେ । ବଳରାମଙ୍କ ଖ୍ୟାତି ଓ ବ୍ୟକ୍ତିତ୍ୱର ପ୍ରସାର ପୁରୀକ୍ଷେତ୍ରକୁ ଆସୁଥିବା ଭକ୍ତମାନଙ୍କ ମାଧ୍ୟମରେ ପ୍ରଚାରିତ ହେଉଥିଲା । ତାଙ୍କ ରଚିତ ଭକ୍ତିଗ୍ରନ୍ଥମାନଙ୍କର ମଧ୍ୟ ଆଦର କ୍ରମେ ବଢ଼ିବାକୁ ଲାଗିଲା । ତେଣୁ ପରବର୍ତ୍ତୀ ସମୟରେ ତାଙ୍କ ଶିଷ୍ୟ ପରମ୍ପରାର କେହି କେହି ଅତ୍ୟନ୍ତ ଅନୁଗତ ନିଜକୁ ବଳରାମ ଦାସ ନାମରେ ନାମିତ କରି ଗ୍ରନ୍ଥ ରଚନା କରିବା କିଛି ବିଚିତ୍ର ନୁହେଁ । ତେବେ ଉପଯୁକ୍ତ ଗବେଷଣା, ଭାଷାତାତ୍ତ୍ୱିକ ଓ ଦାର୍ଶନିକ ଅନୁଶୀଳନରେ ନିଷ୍ଠାର ଅଭାବ ସେ ସମୟର ଅନେକ କବିଙ୍କ ପରି ବଳରାମଙ୍କୁ ମଧ୍ୟ ସନ୍ଦେହଯୁକ୍ତ କରି ରଖିଛି । ବଳରାମଙ୍କ ଅନ୍ୟାନ୍ୟ ସୃଷ୍ଟି ନେଇ ଭିନ୍ନମତ ସତ୍ତ୍ୱେ ମୋର ପୂର୍ବ ଆଲୋଚକଗଣ ବଳରାମ ଦାସଙ୍କ ନାମରେ ଯେଉଁସବୁ ଗ୍ରନ୍ଥର ତାଲିକା ପ୍ରଦାନ କରିଛନ୍ତି, ସେଗୁଡ଼ିକ ହେଲା – 'ଜଗମୋହନ ରାମାୟଣ', 'ବେଦାନ୍ତସାର ଗୁପ୍ତଗୀତା', 'ବଟ ଅବକାଶ', 'ବ୍ରହ୍ମାଣ୍ଡ ଭୂଗୋଳ', 'ବେଢ଼ା ପରିକ୍ରମା', 'ଭାବ ସମୁଦ୍ର', 'ଶ୍ରୀମଦ୍‌ଭଗବଦ୍ ଗୀତା', 'ଲକ୍ଷ୍ମୀପୁରାଣ', 'ମୃଗୁଣୀ ସ୍ତୁତି', 'ବଉଳା ଅଧ୍ୟାୟ' ତଥା ଅନେକ ଚଉପଦୀ, ଚଉତିଶା, ସ୍ତୁତି, ମାଳାଶ୍ରୀ, ଭଜନ, ଜଣାଣ, ପୋଇ, କୋଇଲି ଆଦି କ୍ଷୁଦ୍ର ରଚନା । ଏ ସକଳ ସୃଷ୍ଟି ମଧ୍ୟରୁ ଦାଣ୍ଡୀ ବା ଜଗମୋହନ ରାମାୟଣ ବଳରାମ ଦାସଙ୍କ ସର୍ବଶ୍ରେଷ୍ଠ ସୃଷ୍ଟି ରୂପେ ସ୍ୱୀକୃତ । ଏହା କବିଙ୍କ ସ୍ୱୀକାରୋକ୍ତି ଅନୁଯାୟୀ ତାଙ୍କ ଯୁବକ ବୟସର ରଚନା । କବିଙ୍କୁ

୩୨ବର୍ଷ ହେବାବେଳକୁ ଗ୍ରନ୍ଥ ରଚନା ହୋଇଥିଲା । ଆନୁମାନିକ ଭାବେ ଏହା ୧୫୧୦ ଖ୍ରୀଷ୍ଟାବ୍ଦର ପୂର୍ବବର୍ତ୍ତୀ ଘଟଣା । କାରଣ ୧୫୧୦ରେ ଚୈତନ୍ୟଙ୍କର ଉତ୍କଳାଗମନ ବେଳକୁ ବଳରାମ ଦାସ ଓ ଜଗନ୍ନାଥ ଦାସ ପୁରୀରେ ବିଖ୍ୟାତ ହୋଇ ସାରିଥିଲେ । ରାମାୟଣ ଲେଖା ସରି ବଳରାମଙ୍କ ଖ୍ୟାତି ଚତୁର୍ଦ୍ଦିଗକୁ ପ୍ରସାରିତ ହୋଇସାରିଥିଲା ଓ ଜଗନ୍ନାଥ ଭାଗବତ ଲେଖା ଆରମ୍ଭ କରିଥିଲେ । ଭାଗବତ ବ୍ୟାଖ୍ୟା କରୁଥିବା ସମୟରେ ହିଁ ବଟଗଣେଶ ନିକଟରେ ଶ୍ରୀଚୈତନ୍ୟ ତାଙ୍କୁ ସାକ୍ଷାତ କରିଥିଲେ । ଚୈତନ୍ୟଙ୍କ ଆଗମନ ଓ ନାମଭକ୍ତିର ପ୍ରଚାର ଉତ୍କଳୀୟ ଜ୍ଞାନବାଦୀ ସାଧନାର ପରିପନ୍ଥୀ ନଥିଲା କି ସହଯୋଗୀ ମଧ୍ୟ ନଥିଲା । ତେଣୁ ରାମାୟଣୋତ୍ତର ବଳରାମଙ୍କ ରଚନାଗୁଡ଼ିକ ଅନେକ ଜ୍ଞାନବାଦୀ ଦର୍ଶନ ସମ୍ବଳିତ । 'ବ୍ରହ୍ମଗୀତା', 'ବେଦାନ୍ତସାର ଗୀତା', 'ବ୍ରହ୍ମାଣ୍ଡ ଭୂଗୋଳ' ଆଦି ଏହି ସମୟର ରଚନା । ପରବର୍ତ୍ତୀ ସମୟରେ ଗଜପତି ପ୍ରତାପରୁଦ୍ର ଦେବ ଚୈତନ୍ୟଙ୍କୁ ସ୍ୱୀକାର କରିଗଲେ, ଭକ୍ତିମାର୍ଗ ରାଜାନୁଗ୍ରହ ଲାଭ କରି ରାଜଧର୍ମରେ ପରିଣତ ହେଲା, ଜଗନ୍ନାଥ ତାଙ୍କର ସମସ୍ତ ପୂର୍ବ ପରିଚୟକୁ ପରିହାର କରି କୃଷ୍ଣତ୍ୱର ପରିଚ୍ଛଦ ଧାରଣ କଲେ । ବ୍ରାହ୍ମଣ୍ୟବାଦର ଅସପନ୍ ପ୍ରଭାବ ବିରୁଦ୍ଧରେ 'ଲକ୍ଷ୍ମୀପୁରାଣ' ସ୍ପଷ୍ଟବାଦୀ କବି ବଳରାମଙ୍କ ଏକ ଯୁଗାନ୍ତକାରୀ ପ୍ରତିକ୍ରିୟା । ଜାତିଭେଦ ଓ ଲିଙ୍ଗଭେଦ ବିରୁଦ୍ଧରେ ଷୋଡ଼ଶ ଶତାବ୍ଦୀର ଜଣେ ଅବ୍ରାହ୍ମଣ ସନ୍ଥକବିଙ୍କ ଏଇ ଦୃଢ଼ ବିଦ୍ରୋହ, ସମ୍ଭବତଃ ଓଡ଼ିଆ ସମାଜରେ ଧର୍ମବର୍ଣ୍ଣ ନିର୍ବିଶେଷରେ ଜଗନ୍ନାଥ ସଂସ୍କୃତିକୁ ପରିବ୍ୟାପ୍ତ କରିବା ସହିତ ବର୍ଣ୍ଣବିଦ୍ୱେଷ ଓ ଲିଙ୍ଗ ନିଗ୍ରହର ମାତ୍ରାକୁ ସର୍ବଭାରତୀୟ ସମାଜର ଆନୁପାତିକତାରେ ଯଥେଷ୍ଟ ଊଣା କରିଦେଇଛି ।

ଏସବୁ ସତ୍ତ୍ୱେ ସନ୍ଥକବି ବଳରାମ ଦାସ ଥିଲେ ନିର୍ଗୁଣ ଭକ୍ତିଧାରାର ଜଣେ ନିଷ୍ଠାପର ଉପାସକ । ମାଳା-ତିଳକ ଧାରଣ କରିବା, ନାମାବଳୀ ପକାଇବା, ମୁଖରେ ଲୋକଦେଖାଣିଆ ଭାବରେ କୃଷ୍ଣନାମ ଜପ କରିବା, ଜଟା କୌପୀନ ଧାରଣ କରିବା, ଭସ୍ମକମଣ୍ଡଳୁ ଧରି ପରିବ୍ରାଜକ ସାଜିବା ଆଦି ସମସ୍ତ ବାହ୍ୟାଚାରକୁ କବୀରଙ୍କ ପରି ବଳରାମ ଦୃଢ଼ ବିରୋଧ କରୁଥିଲେ । ପରିଣାମସ୍ୱରୂପ ଉପସ୍ଥିତ ସକଳ ଦୁଃଖ, ଯନ୍ତ୍ରଣା, ଲାଞ୍ଛନା, ଅପମାନ ଓ ବିପଦ ନିର୍ଗୁଣ ବ୍ରହ୍ମ ସେହି ଅପାଣିପାଦ ଦେବତା ଜଗନ୍ନାଥଙ୍କ ଅପାର କୃପାରୁ ଟଳି ଯାଉଥିଲା । ଭକ୍ତ ଓ ସନ୍ଥମାନଙ୍କ ମଧ୍ୟରେ ତାଙ୍କର ମହିମା ପ୍ରଚାରିତ ହେଉଥିଲା । ଈଶ୍ୱର ଦାସ ତାଙ୍କ 'ଚୈତନ୍ୟ ଭାଗବତ'ରେ ବଳରାମଙ୍କ ଏବଂବିଧ ବ୍ୟକ୍ତିତ୍ୱ ବିଷୟ ଶ୍ରବଣ କରି ଲେଖିଥିଲେ – "ମାଳା ତିଳକ ଯାର ନାହିଁ । ସେ ପୁଣି ବୈଷ୍ଣବ ବୋଲାଇ ।"

ଅବକ୍ଷୟଧର୍ମୀ ସନ୍ୟାସୀଗଣଙ୍କୁ ସହଜ ନିର୍ଗୁଣ ଭକ୍ତିର ଭଲପାଇବା ମଧ୍ୟରେ ବାନ୍ଧିହୋଇ ରହିବାକୁ କବି ବଳରାମ ବାରମ୍ବାର ଅନୁରୋଧ କରୁଥିଲେ । ଜୀବନବ୍ୟାପୀ

ସାଧନା ଓ ସଂଘର୍ଷ କରି କବି ବଳରାମ ଆନୁମାନିକ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧରେ ଆରପାରିକୁ ଗମନ କରିଥିଲେ । ଗବେଷକମାନଙ୍କ ମତରେ ଓଡ଼ିଶାର ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ଜୀବନର ଅବକ୍ଷୟକୁ ଦେଖି ଏବଂ ଗଜପତି ପ୍ରତାପରୁଦ୍ର, ଗୁରୁ ଶ୍ରୀ ଚୈତନ୍ୟ ଓ ସଖା ଜଗନ୍ନାଥ ଦାସଙ୍କ ମହାପ୍ରୟାଣ ଦୁଃଖରେ ଭାଙ୍ଗିପଡ଼ି ବଳରାମ ପୁରୀ ଛାଡ଼ି ଦେଇଥିଲେ । ଆପଣାର ଜନ୍ମଭୂମି ଏବରଙ୍ଗ ଓ ବେଗୁନିଆ ଗ୍ରାମରେ ଶେଷ ଜୀବନ ଅତିବାହିତ କରିଥିଲେ । ତାଙ୍କର ମହାପ୍ରୟାଣ ଦିବସ ଅକ୍ଷୟ ତୃତୀୟାକୁ ସ୍ମରଣ କରି ସେଇ କାଳରୁ ଆଜିଯାଏ ବେଗୁନିଆ ନିକଟବର୍ତ୍ତୀ ସମାଧିପୀଠ ଠାରେ ଏକ ସାଧୁମେଳା ଅନୁଷ୍ଠିତ ହୋଇଆସୁଛି ।* ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରୁ ଏବେ ମଧ ବହୁ ସାଧୁ, ସନ୍ଥ, ସନ୍ନ୍ୟାସୀ ଅକ୍ଷୟ ତୃତୀୟାରେ ଏକତ୍ରିତ ହୋଇ ବଳରାମଙ୍କ ସ୍ମୃତି କୀର୍ତ୍ତନ କରିବା ସହିତ ତାଙ୍କ ରଚିତ ଗ୍ରନ୍ଥ ଓ ଭଜନ/ଜଣାଣ ପାଠ କରି ଆନନ୍ଦିତ ହୁଅନ୍ତି ।

। ଦୁଇ ।

'ଜଗମୋହନ ରାମାୟଣ' ବଳରାମ ଦାସଙ୍କ ଶ୍ରେଷ୍ଠ କୃତି । ପ୍ରେରଣା ପର୍ବରେ ଅଛନ୍ତି ସ୍ୱୟଂ ଜଗତମୋହନ ଜଗନ୍ନାଥ । ସେ ସ୍ମୃତିପଟରେ ରହି ପଦ ବତାଇଛନ୍ତି । ବଳରାମ ଯେସବୁକୁ କେବଳ ଯନ୍ତ୍ରଚାଳିତ ପରି ଲେଖିଚାଲିଛନ୍ତି । ଗୋଟିଏ କାଣ୍ଡର ସମାପ୍ତି ପରେ ଅନ୍ୟ କାଣ୍ଡ ଆରମ୍ଭ କଲାବେଳେ ଯେଉଁଠି ପଦବିସ୍ମୃତିର ମୁହୂର୍ତ୍ତ ଆସିଛି, ସେଠି ପୁଣି କବି ଜଗନ୍ନାଥଙ୍କୁ ବା ତାଙ୍କ ଅଂଶବିଶେଷ ରୂପେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସ୍ତୁତି କରିଛନ୍ତି । ସ୍ତୁତି ପରେ ପରେ ପୁଣି ପଦ ସ୍ଫୁରିତ ହୋଇଛି ଏବଂ କବି ଅନର୍ଗଳ ଲେଖିଯାଇଛନ୍ତି ରାମକଥାର କଥାବସ୍ତୁ । 'ଉତ୍ତରା କାଣ୍ଡ'ର ଆରମ୍ଭରେ କବି ଏହା ସୂଚାଇ ଦେଇଛନ୍ତି –

"ଶ୍ରୀ ଜଗମୋହନ ରାମାୟଣ ଗ୍ରନ୍ଥ
ଏଥିର କବି ସେ ନୀଳଗିରି ଜଗନ୍ନାଥ ।
ସେହି ମୋର ହୃଦେ ବିଜେ କରିଥା'ନ୍ତି
ଆପଣାର ଚରିତ ଆପଣେ ବଖାଣନ୍ତି ।
ମୂଷାର ବିମ୍ବରୁ ଯେହ୍ନେ ବାହାର ଶେଷ ନାଗ
ମୋହୋର ମୁଖରୁ ଗ୍ରନ୍ଥ ତେସନେକ ବାଗ ।"

ଜଗନ୍ନାଥ ଖାଲି ବଳରାମଙ୍କ ରାମାୟଣ ଗ୍ରନ୍ଥର ପ୍ରବକ୍ତା ନୁହନ୍ତି, ସେ ନିଜେ ଏହାର ନାୟକ । ଯେ ରାମ, ସେ ବାସୁଦେବ, ସେ କୃଷ୍ଣ – ପୁଣି ସେ ହିଁ ନୀଳଗିରି

* କବି ବଳରାମ ଦାସ, କୃଷ୍ଣଚରଣ ସାହୁ, ଓଡ଼ିଶା ସାହିତ୍ୟ ଏକାଡେମୀ, ୧୯୮୮, ପୃ.୧୮–୧୯

ଶିଖରବାସୀ ଶ୍ରୀଜଗନ୍ନାଥ । ଗ୍ରନ୍ଥ ଆରମ୍ଭରୁ ଗ୍ରନ୍ଥ ଶେଷଯାଏ କବି ଜଗନ୍ନାଥ ଓ ରାମଙ୍କ ମଧ୍ୟରେ ଏକତ୍ୱ ପ୍ରତିଷ୍ଠା କରିଅଛନ୍ତି । 'ଉତ୍ତରା କାଣ୍ଡ'ର ଆରମ୍ଭରେ ରାମାଭିଷେକ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ରାମ ଅଯୋଧ୍ୟାର ରାଜସିଂହାସନରେ ଅଭିଷିକ୍ତ ହୋଇଛନ୍ତି । ସୁଗ୍ରୀବ, ବିଭୀଷଣ, ହନୁମାନ, ଅଙ୍ଗଦ ପୁଣି ବଶିଷ୍ଠ, ଅଙ୍ଗିରା, ବାମଦେବ ଆଦି ସିଂହାସନ ନିକଟରେ ଉପସ୍ଥିତ ଅଛନ୍ତି । ଦେବଋଷି, ରାଜଋଷି ଓ ବ୍ରହ୍ମଋଷିମାନେ ମଧ୍ୟ ଅଛନ୍ତି । ହେଲେ ଏହାଙ୍କ ସହିତ ଆଉ କେଉଁମାନେ ଅଛନ୍ତି ଦେଖନ୍ତୁ –

"ବଶିଷ୍ଠ ବାମଦେବ ଜାବାଳି କାଶ୍ୟପ
ଏହାଙ୍କୁ ସମସ୍ୟା କରନ୍ତି ରାମ ନୃପ ।
ସୁମନ୍ତ ସହିତେ ଆମନାତ୍ୟ ଗଣମାନେ
ଗହଗହ ଶବଦ ଶ୍ରୀରାମ ଆସ୍ଥାନେ ।
ଦେବଋଷି ବ୍ରହ୍ମଋଷି ରାଜଋଷି ଅଛନ୍ତି
ଭଟମିଶ୍ର ପଣ୍ଡାଏ ନ୍ୟାୟେ ବିଚାରନ୍ତି ।
ସଇନି ପଟୋଆରି ହୋଇ ଅଛନ୍ତି ସଭାତଳେ
ଆସି ନପାରନ୍ତି ଘୋଡ଼ାଙ୍କ ଗହଳେ ।
ଖୁଣ୍ଟିଆ ପଡ଼ିଆରି ଅଛନ୍ତି ଦୁଆରେ
ଗାୟେଣୀମାନେ ଗୀତ ଗାବନ୍ତି ସୁସ୍ୱରେ ।
ରତ୍ନସିଂଘାସନେ ବିଜେ ରାମରାହୁ
ନୀଳଗିରି ଶିଖରେ ଯେହ୍ନେ ବିଜେ ଜଗନ୍ନାଥ ପ୍ରଭୁ ।"

ପୁଣି ରାମ–ଲକ୍ଷ୍ମଣ–ସୀତା ତୀର୍ଥ ଭ୍ରମଣ କାଳରେ ଯେତେବେଳେ ମହୋଦଧିରେ ସ୍ନାନ କରି ନୀଳଗିରିନାଥଙ୍କୁ ଦର୍ଶନ କରିଛନ୍ତି ସେତେବେଳେ ଜଗନ୍ନାଥଙ୍କ ସହ ରାମ, ସୁଭଦ୍ରାଙ୍କ ସହ ସୀତା ଓ ବଳଭଦ୍ରଙ୍କ ସହ ଲକ୍ଷ୍ମଣ ଏକୀଭୂତ ହୋଇଯାଇଛନ୍ତି । ଜୟଦେବଙ୍କ ସମୟରୁ ଜଗନ୍ନାଥ ଅବତାରୀ ଓ ଅନ୍ୟସବୁ ଅବତାର ଭାବରେ ଉତ୍କଳୀୟ ସମାଜରେ ସ୍ୱୀକୃତ ହୋଇ ସାରିଥିଲେ । ପୁଣି ବିବିଧ ରାମ ଉପାସକ ସମ୍ପ୍ରଦାୟ ପୁରୀ ଆସି ଜଗନ୍ନାଥଙ୍କୁ ରାମଙ୍କ ସହ ତୁଳନା କରି ଉପାସନା କରିଯାଇଥିଲେ । କବି ବଳରାମ ଏହି ପରମ୍ପରାକୁ ଗ୍ରହଣ କରି ଆପଣାର ପ୍ରଭୁଙ୍କୁ ରାମରୂପ ଭାବରେ ଗ୍ରହଣ କରିଛନ୍ତି । ତାଙ୍କରି ନିର୍ଦ୍ଦେଶ, ତାଙ୍କରି ଇଚ୍ଛାରୁ ସେ ରାମାୟଣ ପରି ମହାଗ୍ରନ୍ଥ ରଚନା କରିଛନ୍ତି । ଏଥିପାଇଁ ଏ ଗ୍ରନ୍ଥର ନାମ ସେ ରଖିଛନ୍ତି 'ଜଗମୋହନ ରାମାୟଣ' । ସମଗ୍ର ଗ୍ରନ୍ଥରେ ତିନିଥର ସେ ଏହାକୁ 'ଜଗମୋହନ ରାମାୟଣ' ଭାବରେ ଉଲ୍ଲେଖ କରିଛନ୍ତି । 'ସୁନ୍ଦରା କାଣ୍ଡ'ରେ ଦୁଇଥର ଓ 'ଉତ୍ତରା କାଣ୍ଡ'ରେ ଥରେ କବିଙ୍କର ଏଇ ନାମକରଣ ଦେଖିଲେ ମନେହୁଏ ଏକାନ୍ତ ଭକ୍ତିପୂତ ଚିତ୍ତରେ ଆପଣାର ଇଷ୍ଟଦେବଙ୍କୁ ଗ୍ରନ୍ଥର କବିତ୍ୱ ଓ କୃତିତ୍ୱ

ସମର୍ପି ଦେବାପରେ ଯେପରି ଆଉ କବିଙ୍କର ଅନ୍ତରରେ କୌଣସି ଅବସୋସ ରହିନାହିଁ । 'ସୁନ୍ଦରା କାଣ୍ଡ'ର ଆରମ୍ଭରେ ସେ କହନ୍ତି –

"ନୀଳଗିରି ବିଜୟେ ପ୍ରଭୁ ଜଗନ୍ନାଥ
ତାହାଙ୍କର ଶରଣ ମୁଂ ଅଟଇ ଯଥାର୍ଥ ।
ତେଣୁ ସେ ଭରସା କରଇ ଗ୍ରନ୍ଥ ଭଣି
ହୃଦେ ଭଜେ ମୋହୋର ସେ ଶଙ୍ଖଚକ୍ର ପାଣି ।
ସେ ପ୍ରଭୁ ପ୍ରସନ୍ନେ ମୁଂ କହିବି ରାମକଥା
ଶୁଣିଲେ ଛାଡ଼ିବ ମୋର ଭବଭୟ ବ୍ୟଥା ।
ଜଗମୋହନ ରାମାୟଣ ଏ ଅଟଇ ପୁଣ୍ୟନାମ
ତତ୍ତ୍ୱ କରି ଭାବିଲେ ବସନ୍ତି ବିଷ୍ଣୁଗ୍ରାମ ।"

ପୁଣି ଏଇ କାଣ୍ଡର ଶେଷରେ କବି ଲେଖିଛନ୍ତି –

"ଶ୍ରୀଜଗନ୍ନାଥ ପ୍ରସନ୍ନେ ଯେ ବଳରାମ ଦାସ
ଶ୍ରୀ ଜଗମୋହନ ରାମାୟେଣ କଲଇଂ ପ୍ରକାଶ ।
ଶ୍ରୀ ରାମାୟେଣ ଗ୍ରନ୍ଥ ଯେ ପବିତ୍ର ଆଛାନ
ୟେକମନ ହୋଇଣ ଶୁଣିମ ଯେଉଂ ଜନ ।
ଜୀବନ୍ତେଣ ଭକ୍ତି ଯେ ମରନ୍ତେଣ ମୁକ୍ତି
ନିର୍ମଳ ହୋଅନ୍ତି ଯେ ଯେ ଗ୍ରନ୍ଥ ଶୁଣନ୍ତି ।"

ଓଡ଼ିଶାରେ ଅବଶ୍ୟ ବଳରାମଙ୍କ ରାମାୟଣର ଅନ୍ୟ ଏକ ପରିଚିତ ନାମ ହେଉଛି 'ଦାଣ୍ଡୀ ରାମାୟଣ' । ପ୍ରସିଦ୍ଧ ଦାଣ୍ଡୀ ବୃତ୍ତରେ ଏହା ଲିଖିତ ହୋଇଥିବାରୁ ଏହାର ଏପରି ନାମକରଣ କରାଯାଇଥାଇପାରେ । କିନ୍ତୁ କବି ସମଗ୍ର ଗ୍ରନ୍ଥରେ କୌଣସି ସ୍ଥାନରେ ନିଜ ରଚନାକୁ 'ଦାଣ୍ଡୀ ରାମାୟଣ' କହି ନାହାନ୍ତି । ପୁଣି କେତେକ ପ୍ରକାଶକ ଏହାକୁ 'ଦାଣ୍ଡୀ ରାମାୟଣ' ବା 'ଦକ୍ଷିଣୀ ରାମାୟଣ' ନାମରେ ନାମିତ କରିଅଛନ୍ତି । ଏସବୁ ଗ୍ରନ୍ଥର ଶୁଦ୍ଧ ସଂସ୍କରଣ ହେବାର ପୂର୍ବାବସ୍ଥା । ପ୍ରଫେସର କୃଷ୍ଣଚରଣ ସାହୁ ଏହାର ଶୁଦ୍ଧ ପ୍ରାମାଣିକ ସଂସ୍କରଣ ପ୍ରକାଶ କରିବା ପରେ ଗ୍ରନ୍ଥନାମ ନେଇ ଗବେଷକମାନଙ୍କ ମଧ୍ୟରେ ସମସ୍ତ ସନ୍ଦେହ ଦୂର ହୋଇଯାଇଛି । ଯଦିଓ 'ଦାଣ୍ଡୀ ରାମାୟଣ' ନାମଟି ତଥାପି ଓଡ଼ିଶାର ଗ୍ରାମାଞ୍ଚଳରେ ଏବେ ସୁଦ୍ଧା ବହୁଳ ଭାବରେ ପ୍ରଚାରିତ ହୋଇଛି ।

'ଜଗମୋହନ ରାମାୟଣ' ସମଗ୍ର ଓଡ଼ିଆ ସାହିତ୍ୟର ଚତୁର୍ଥ ପୁରାଣ ଓ ପ୍ରଥମ ରାମାୟଣ ଗ୍ରନ୍ଥ । ଯଦିଓ ସାରଳାଙ୍କ ମହାଭାରତ ବନପର୍ବରେ ରାମକଥାର ଉଲ୍ଲେଖ ରହିଛି ଏବଂ ତାଙ୍କ 'ବିଚିତ୍ର ରାମାୟଣ'ରେ ରାମକଥାର 'ଉତ୍ତରାକାଣ୍ଡ' ଅଂଶଟି ଉପଲବ୍ଧ, ପୂର୍ଣ୍ଣାଙ୍ଗ ରାମକଥାର ପ୍ରଥମ ଗ୍ରନ୍ଥ 'ଜଗମୋହନ ରାମାୟଣ' ।

ଏଥିରେ ବାଲ୍ମୀକି ରଚିତ ରାମକଥାର କ୍ରମ ସୁରକ୍ଷିତ ହୋଇଛି । ଯଦିଓ 'ଜଗମୋହନ ରାମାୟଣ' ବାଲ୍ମୀକି ରାମାୟଣର ନିଷ୍ଠାପର ଅନୁବାଦ ନୁହେଁ, ହେଲେ ମୂଳକଥାର ସଂରଚନାରେ କବି ବିଶେଷ କିଛି ପରିବର୍ତ୍ତନ କରିନାହାନ୍ତି । କିନ୍ତୁ କଙ୍କାଳକୁ ମାଟିଦେଇ ଡଉଲ ଡାଉଲ ପ୍ରତିମାଟିଏ ତିଆରି କରିବା ଓ ଏଥିରେ ନାନା ରଂଗ ଦେଇ ନୟନାଭିରାମ ରାମଙ୍କ ନିଟୋଳ ମୂର୍ତ୍ତିଟିଏ ନିର୍ମାଣ କରିବାରେ କବି ବଳରାମଙ୍କ ଯେଉଁ ସଫଳ କବି ବ୍ୟକ୍ତିତ୍ୱ ରହିଛି, ତାହା ଆଜି ମଧ୍ୟ ଆମ ସାହିତ୍ୟର ଅଗଣିତ ଶବ୍ଦଶିଳ୍ପୀଙ୍କ ପ୍ରେରଣାର ଉତ୍ସ ହୋଇ ରହିଛି । ମୂଳ କାହାଣୀ ସହିତ ବଳରାମ ଯେଉଁସବୁ ଉପକଥାକୁ ସଂଯୋଜିତ କରି ରଚନାଟିକୁ ପାଠକୀୟ ଶ୍ରଦ୍ଧାର ଅଧିକାରୀ କରାଇଛନ୍ତି ତାହାହେଲା – ଋଷ୍ୟଶୃଙ୍ଗ ଉପାଖ୍ୟାନ, ଶନି ଓ ଦଶରଥ କଳି, ଦେବୀଗଙ୍ଗାଙ୍କର ଧରାବତରଣ, ଅହଲ୍ୟା ଉପାଖ୍ୟାନ, ଶ୍ରୀରାମ ଗୁହକ ଭେଟ ଓ ମିତ୍ରତା, ପର୍ଶୁରାମ ଜନ୍ମ ବିବରଣ, ମନ୍ଥରା ଜନ୍ମ ବିବରଣ, ଦିତି ଅଦିତି ବିବାଦ, ଦଣ୍ଡକାରଣ୍ୟରେ ଋଷିଙ୍କ ବରଦାନ, ରାମଚନ୍ଦ୍ରଙ୍କ ତୀର୍ଥଯାତ୍ରା, ସୀତାଙ୍କୁ ଲକ୍ଷ୍ମଣଙ୍କର ଅଭିଶାପ, ମାୟା ଓ ଛାୟା ସୀତା, ଲୀଳାବତୀ କଥା, ସାରସ କଥା, ଗୁଣ୍ଡୁଚି ମୂଷା କଥା, ସନ୍ଥପଣ୍ଡା କଥା, ବେଦବତୀ କନ୍ୟା କଥା, ରାବଣ ମନ୍ଦୋଦରୀ କଥୋପକଥନ, ବିରଜାକ୍ଷେତ୍ର ବିବରଣ ଆଦି ପ୍ରସଙ୍ଗ । ଓଡ଼ିଶାର ସମକାଳୀନ ସମାଜ, ସଂସ୍କୃତି ଏବଂ ଓଡ଼ିଆ ସମାଜରେ ପ୍ରଚଳିତ ବିଭିନ୍ନ କାହାଣୀକୁ ଅତି ଚତୁରତାର ସହିତ କବି ରାମାୟଣ ମଧ୍ୟରେ ସନ୍ନିବେଶିତ କରିଅଛନ୍ତି । ଗଜପତି ଶାସନର ଶାସନନୀତି, ଯୁଦ୍ଧନୀତି, ସୈନ୍ୟସଜ୍ଜା, ଆକ୍ରମଣ ଓ ପ୍ରତିଆକ୍ରମଣ, ସାଧାରଣ ନାଗରିକଙ୍କ ଅଧିକାର, ନାରୀ-ପୁରୁଷ, ପୁତ୍ରକନ୍ୟା, ପିତା-ପୁତ୍ର ଆଦିଙ୍କ ସାମାଜିକ ଦାୟିତ୍ୱ ଓ କର୍ତ୍ତବ୍ୟ ଆଦି ବିଷୟରେ ବ୍ୟାପକ ବର୍ଣ୍ଣନା ବଳରାମ ଜଗମୋହନ ରାମାୟଣରେ କରିଅଛନ୍ତି । ବଳରାମଙ୍କ ରାମାୟଣର ସବୁଠୁ ବଡ଼ ବିଶେଷତ୍ୱ ହେଉଛି ଲୋକଭାଷାକୁ କାବ୍ୟଭାଷାରେ ପରିଣତ କରିବା । କବି ତତ୍କାଳୀନ ଓଡ଼ିଶାର ଲୋକକଥିତ ଭାଷାକୁ କାବ୍ୟଭାଷାରେ ରୂପାନ୍ତରିତ ପୂର୍ବକ ତା'ର ସୁନ୍ଦର କାବ୍ୟିକ ପ୍ରୟୋଗ କରିଛନ୍ତି । ମହାକବି ସାରଳା ଦାସ ଥିଲେ ଏଇ ଭାଷା ଉନ୍ନୟନର ପଥିକୃତ୍ ସ୍ରଷ୍ଟା । ସେଥିପାଇଁ ତାଙ୍କ ଗ୍ରନ୍ଥମାନଙ୍କରେ ଶବ୍ଦମାନଙ୍କର ପ୍ରୟୋଗ ଓ ତା'ର କାବ୍ୟିକ ରୂପ ପ୍ରଦାନ କଲାବେଳେ ସାରଳା ଅନେକ ସମୟରେ ଅସ୍ୱସ୍ତିକର ପରିବେଶର ସମ୍ମୁଖୀନ ହୋଇଛନ୍ତି । ଫଳତଃ ତାଙ୍କର ପଦମାନଙ୍କର ଅକ୍ଷରକ୍ରମ ୧୨ରୁ ୩୨ ଅକ୍ଷର ପର୍ଯ୍ୟନ୍ତ ପ୍ରସାରିତ ହୋଇଛି । କିନ୍ତୁ ବଳରାମଙ୍କ ସମୟକୁ ଏହା ଅଧିକ ମାର୍ଜିତ ଓ ରୁଚିସମ୍ପନ୍ନ ହୋଇ ସାରିଥାଏ । ପ୍ରାକୃତ କାବ୍ୟ/ପୁରାଣ ରଚନାକ୍ରମରୁ ଶବ୍ଦ ସଂଚୟନ କରି ତା'ର ସାହିତ୍ୟିକ ଉପଯୋଗ କରିବାରେ ବଳରାମଙ୍କ ପାରଦର୍ଶିତା ଅସାମାନ୍ୟ । ଯଦିଓ ସାରଳା ଓ ବଳରାମଙ୍କ ମଧ୍ୟରେ ସମୟସୀମାର ଏତେ କିଛି ପ୍ରଭେଦ ନଥିଲା, ତେବେ ସାରଳା ଗ୍ରାମ୍ୟ ପରିବେଶରେ ରହୁଥିବା ଜଣେ କୃଷିଜୀବୀ

ହୋଇଥିବାବେଳେ ବଳରାମ ସହରରେ ରହୁଥିବା ଜଣେ ମନ୍ତ୍ରୀପୁତ୍ର ଥିଲେ । ତେଣୁ ତାଙ୍କର ଭାଷା ପ୍ରୟୋଗର ଶୈଳୀ ସାରଳାଙ୍କ ଠାରୁ ଭିନ୍ନ । ପ୍ରକୃତିର ମନୋରମ ରୂପଛଟାର ବର୍ଣ୍ଣନା ପ୍ରସଙ୍ଗରେ, ନାରୀ-ପୁରୁଷଙ୍କ ରୂପଗୁଣର ବର୍ଣ୍ଣନାରେ, ପୂଜାପାର୍ବଣର ରୂପାୟଣରେ ଏହାର ପ୍ରଚୁର ଉଦାହରଣ ଦେଖିବାକୁ ମିଳେ । ମୂଳକଥା ମଧ୍ୟରେ ବଳରାମ ଯେତେବେଳେ ଉପକଥାମାନଙ୍କର ସଂଯୋଜନା କରିଅଛନ୍ତି, ତା'ର ନାଟକୀୟ ଉପସ୍ଥାପନା ଓ ସୁବିସ୍ତୃତ ସୂକ୍ଷ୍ମାତିସୂକ୍ଷ୍ମ ବର୍ଣ୍ଣନା ପ୍ରଦାନ କରି ପାଠକକୁ ଏପରି ଆକର୍ଷିତ କରି ରଖିଛନ୍ତି ଯେ ପ୍ରସଙ୍ଗଟି ସମାପ୍ତ ହେଲେ ସୁଦ୍ଧା ସେ ଏହା ଜାଣିପାରେ ନାହିଁ କି ବିରକ୍ତ ହୋଇପାରେ ନାହିଁ । ଏଥିରୁ ଦୃଷ୍ଟାନ୍ତଟିଏ ନିଆଯାଇପାରେ ।

ଆଦିକାଣ୍ଡର ଜରତା ପ୍ରସଙ୍ଗଟିକୁ ଦେଖନ୍ତୁ । ମୂଳ ବାଲ୍ମୀକି ରାମାୟଣରେ କେବଳ ସୂଚନା ମାତ୍ର ଦେଖିବାକୁ ମିଳେ । ଅଙ୍ଗ ଦେଶରେ ଅନାବୃଷ୍ଟି ହେବାରୁ ରାଜାଜ୍ଞାରେ କେତେକ ଗଣିକା ସେମାନଙ୍କର ସୁନ୍ଦର ରୂପ ଓ ମଧୁର ବଚନରେ ଋଷ୍ୟଶୃଙ୍ଗ ମୁନିଙ୍କୁ ଭୁଲାଇ ଅଙ୍ଗଦେଶକୁ ନେଇ ଆସିଥିଲେ । ଏଥିରେ ଗଣିକାମାନଙ୍କର କୌଣସି ନାମ ନାହିଁ କିମ୍ବା ଋଷିକୁମାର ଋଷ୍ୟଶୃଙ୍ଗଙ୍କ ସହିତ ସେମାନଙ୍କର ବିଳାସଯାତ୍ରାର ଚିତ୍ର ନାହିଁ । ବଳରାମ ଏଇ ପ୍ରସଙ୍ଗଟିକୁ ଅଧିକ ଜୀବନ୍ତ କରିବାକୁ ଚେଷ୍ଟା କରିଛନ୍ତି । ପ୍ରଥମତଃ ଦେଶ ଓ ଜାତିର ମଙ୍ଗଳ ପାଇଁ ସେ ଏକ ରୂପଜୀବୀର ଜୀବନୋତ୍ସର୍ଗ ପ୍ରସଙ୍ଗକୁ ଖୁବ୍ ଜୀବନ୍ତ କରି ଗଢ଼ିଛନ୍ତି । ସଫଳ ହେଲେ ଅମାପ ଧନ, ସମ୍ମାନ ଲାଭ ଓ ବିଫଳ ହେଲେ ଅଭିଶାପଗ୍ରସ୍ତ ହୋଇ ଜନ୍ମଜନ୍ମାନ୍ତର ପର୍ଯ୍ୟନ୍ତ ଦୁଃଖଲାଭ । ଏହା ସତ୍ତ୍ୱେ ଜାତୀୟ କାର୍ଯ୍ୟ ଲାଗି ରୂପଜୀବୀ ଜରତା ତା'ର ସଖୀ ସହଚରୀଙ୍କ ସହିତ ଋଷିଙ୍କୁ ଆଣିବାକୁ ପ୍ରସ୍ତୁତ ହୋଇଛି । ରାଜାଙ୍କ ତରଫରୁ ତାଙ୍କୁ ଏକ ସୁସଜ୍ଜିତ ନୌକା ଯୋଗାଇ ଦିଆଯାଇଛି । ଯାହାର ବର୍ଣ୍ଣନା ମଧ୍ୟ ଏକାନ୍ତ ଅତୁଳନୀୟ । ଉତ୍କଳୀୟ ନୌବାଣିଜ୍ୟର ବିଶାଳ ନୌଭେଳାମାନଙ୍କର ଚିତ୍ର ଏଥିରୁ ଦେଖିବାକୁ ମିଳେ । ନୌକା ମଧ୍ୟରେ ରାଜକୀୟ ବିଳାସ କକ୍ଷ, ଉପବନୋପମ କୃତ୍ରିମ ବୃକ୍ଷଲତା, ଅସାମାନ୍ୟ ସୁନ୍ଦରୀ ରୂପଜୀବୀମାନଙ୍କର କାମ ପରିଚର୍ଚ୍ଚାର ବର୍ଣ୍ଣନା ପାଠକଲେ ପାଠକ ଆତ୍ମବିସ୍ମୃତ ନହୋଇ ରହିପାରେ ନାହିଁ । ପୁଣି ନୌକାଯାତ୍ରା ସମୟରେ ନଦୀର ଦୁଇକୂଳର ପ୍ରକୃତି ବର୍ଣ୍ଣନା ଏତେ ଜୀବନ୍ତ ଯେ ପାଠକ ନିଜେ ନୌକାରେ ବସି ସାତକୋଶିଆ ଗଣ୍ଡ ବା ନର୍ମଦାର ଧୂଆଁଧାର ଜଳପ୍ରପାତ ଅତିକ୍ରମ କଲାପରି ମନେକରେ । ରୂପଜୀବୀଗଣ ବିଭାଣ୍ଡକଙ୍କ ଆଶ୍ରମ ନିକଟରେ ପହଞ୍ଚି ନଦୀକୂଳରେ ନାବ ଅଟକାଇଛନ୍ତି । ଋଷି ବିଭାଣ୍ଡକ ତପସ୍ୟା ଉଦ୍ଦେଶ୍ୟରେ ଆଶ୍ରମ ତ୍ୟାଗ କଲାପରେ ଏମାନେ ଆଶ୍ରମକୁ ଯାଇ ଋଷିକୁମାର ଋଷ୍ୟଶୃଙ୍ଗଙ୍କୁ ଆକୃଷ୍ଟ କରିବାକୁ ଚେଷ୍ଟା କରିଛନ୍ତି । ତାଙ୍କୁ ନାନା ଜାତିର ସୁସ୍ୱାଦୁ ଫଳ ଓ ସୁମିଷ୍ଟ ବ୍ୟଞ୍ଜନ ଦେଇଛନ୍ତି । ଜୀବନସାରା କେବଳ କଷା/ପିତା ଖାଇ ଦେହରେ ପାଉଁଶ ବୋଳି ସାଧନା କରୁଥିବା ଯୋଗୀଙ୍କୁ

ନାନାଦି ପ୍ରସାଧନ ସାମଗ୍ରୀ ଯୋଗାଇ ଦେଇଛନ୍ତି । ଏଥିରେ ଋଷ୍ୟଶୃଙ୍ଗଙ୍କର ଏଇ ଦୂରଦେଶାଗତ ଅଭିନବ ସନ୍ନ୍ୟାସୀ (ରୂପଜୀବୀଗଣ)ଙ୍କ ପ୍ରତି ଶ୍ରଦ୍ଧା ଜନ୍ମିଛି । ପରଦିନ ଠିକ୍ ସୁଯୋଗ ଉଣ୍ଡି ବିଭାଣ୍ଡକଙ୍କ ବିଦାୟ ପରେ ରୂପଜୀବୀଗଣ ଋଷ୍ୟଶୃଙ୍ଗଙ୍କ ଆଶ୍ରମକୁ ଯାଇଛନ୍ତି ଏବଂ ସେମାନଙ୍କ ଆଶ୍ରମକୁ ଯିବାପାଇଁ ସାଦର ନିମନ୍ତ୍ରଣ ଜଣାଇଛନ୍ତି । ପିତା ବିଭାଣ୍ଡକଙ୍କ ବାରଣ ସତ୍ତ୍ୱେ ଋଷ୍ୟଶୃଙ୍ଗ ଏ କଥା ମାନିନାହାନ୍ତି ଓ ବାରବନିତାମାନଙ୍କ ସଙ୍ଗେ ନୌକାଶ୍ରମକୁ ବାହାରି ଯାଇଛନ୍ତି । ଋଷିକୁମାର ନୌକା ଉପରେ ଚଢ଼ି ଭିତରକୁ ବିଜେ କରିଯିବା ପରେ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିବା ନାବିକମାନେ ନୌକାକୁ ବନ୍ଧନମୁକ୍ତ କରିଛନ୍ତି ଓ ସ୍ରୋତର ଅନୁକୂଳରେ ନୌକା ତୀବ୍ର ବେଗରେ ଗତି କରିଚାଲିଛି । ଏଣେ ନୌକା ଭିତରକୁ ଯାଇଥିବା ଯୁବ ସନ୍ନ୍ୟାସୀ ବିଶ୍ୱବିମୋହିନୀ ଜରତା ଦ୍ୱାରା କବଳିତ ହୋଇଛନ୍ତି ।

ଅଙ୍ଗଦେଶ ପ୍ରବେଶ ହେଉଣୁ ଋଷି ମାଗିଛନ୍ତି ମଧୁର ଜଳ । କିନ୍ତୁ ଜଳ କାହିଁ ? ଦୀର୍ଘ ବାରବର୍ଷ ହେଲା ଯେ ଏ ଦେଶ ଅନାବୃଷ୍ଟିର ଶିକାର ହୋଇଛି । ବ୍ରାହ୍ମଣର ଶାପରେ ଅଙ୍ଗଦେଶର ରାଜା ଲୋମପାଦଙ୍କ ରାଜ୍ୟ ନିର୍ଜଳା ପାଲଟିଛି । ଋଷ୍ୟଶୃଙ୍ଗଙ୍କୁ ଅଙ୍ଗଦେଶରେ ପହଞ୍ଚାଇ ସାରିବା ପରେ କବି ବଳରାମ ଜରତା ମୁଖରେ ଯେଉଁ ନିଷ୍କପଟ ସ୍ୱୀକାରୋକ୍ତି ବାଢ଼ି ଦେଇଛନ୍ତି, ତାହା ଏହି ଉଗ୍ରତପା ସନ୍ନ୍ୟାସୀଙ୍କ ହୃଦୟ ତରଳାଇ ଦେଇଛି –

"ମୁହିଂ ବେଶ୍ୟାନାରୀ ଅଟଇ ନଟଜାତି
ନୁହଇଂ ପୁରୁଷ ନୁହଇଂ ମୁହିଂ ଯତି ।
ବାରହ ବନିତାୟେ ପଡ଼ିଲେ ବିକଳେ
ମୁନିର ପାଦତଳେ ପଡ଼ି ବୋଲନ୍ତି ସକଳେ ।
ନକର କୋପ ମୁନି ନଦିଅ ଆମ୍ଭଙ୍କୁ ଶାପ
ସ୍ୱାମୀର ଆଜ୍ଞାରେ ୟେ ଆମ୍ଭେ କଲୁ ୟେଡ଼େ ଧାପ ।
ଜଳ ବୃଷ୍ଟି ନୋହିଲେ ତ ଜଗତଜନ୍ତୁ ମରି
ତେଣୁ ସେ ଆଣିଲୁ ଦେବ ପ୍ରାଣକୁ ନଡରି ।"

*(ଆଦି କାଣ୍ଡ)*

ବାସ୍ ! ଏତିକିରେ ମୁନିଙ୍କ ହୃଦୟ ତରଳି ଯାଇଛି । ବାରବନିତାମାନଙ୍କୁ ଉଠିବାକୁ କହି ସେମାନଙ୍କ ସୁରତି ଦାନରେ ଋଷି ତୃପ୍ତ ବୋଲି ସ୍ୱୀକାର କରିଛନ୍ତି ଏବଂ ପ୍ରତିଦାନ ସ୍ୱରୂପ ଅଙ୍ଗଦେଶର ସୀମାଯାଏ ଯେତେ ଇଚ୍ଛା ବୃଷ୍ଟି ହେଉ ବୋଲି ଋଷ୍ୟଶୃଙ୍ଗ ଆଜ୍ଞା ଦେଇଛନ୍ତି । ଋଷ୍ୟଶୃଙ୍ଗଙ୍କ ଆଗମନ ସହିତ ଚାରିମେଘ ଘନଘୋର ବୃଷ୍ଟି କରି ରାଜ୍ୟକୁ ପୂର୍ଣ୍ଣ ଶାନ୍ତି ପ୍ରଦାନ କରିଛି । ପରେ ଋଷିଙ୍କ ସୁପାରିସ କ୍ରମେ ରାଜା ଜରତାଙ୍କୁ ଅମାପ ସମ୍ପତ୍ତି ପ୍ରଦାନ କରିଛନ୍ତି ।

କବି ବଳରାମ ଏହିପରି ଅନେକ ଉପକଥାର ସଂଯୋଗ କରି ତାଙ୍କ ରାମାୟଣକୁ ବେଶ୍ ସୁଖପାଠ୍ୟ କରିପାରିଛନ୍ତି । ମୂଳ କାହାଣୀ ସହିତ ଏହିସବୁ କାହାଣୀ ଏପରି ସଂଯୁକ୍ତ ହୋଇଯାଇଛି ଯେ ପରବର୍ତ୍ତୀ ସମୟରେ ରାମକଥାକୁ ନେଇ ପୁରାଣ, କାବ୍ୟ, ନାଟକ ଆଦି ଯାହା ଲେଖାଯାଇଛି ସବୁରେ ବଳରାମଙ୍କ କାହାଣୀର ଛାପ ଦେଖିବାକୁ ମିଳିଛି ।

। ତିନି ।

ପୂର୍ବରୁ ଆଲୋଚିତ ହୋଇଛି ବଳରାମଙ୍କ ରାମାୟଣ ବାଲ୍ମୀକିଙ୍କ ରାମାୟଣର ଏକ ଅନୁବାଦ ନୁହେଁ । ରାମକଥା ଆଧାରିତ ବାଲ୍ମୀକିଙ୍କ ରଚନାର କଙ୍କାଳ ଉପରେ ବଳରାମ ଆପଣାର କଳ୍ପନାର ପୁଟ ଦେଇ ତାକୁ ଏକ ବିଶାଳ ମହାଗ୍ରନ୍ଥରେ ପରିଣତ କରିଅଛନ୍ତି । ଏଥିରେ କବିଙ୍କ ସମକାଳର ସମାଜ, ସଂସ୍କୃତି, ଧର୍ମ, ଆଚାରବିଚାର, ପର୍ବପର୍ବାଣି ସ୍ଥାନ ପାଇବା ସହିତ ଆମୂଳାନ୍ତ ବଳରାମଙ୍କ ଦିବ୍ୟ କବିତ୍ୱର ଅମିୟ ସ୍ପର୍ଶ ଗ୍ରନ୍ଥଟିକୁ ଓଡ଼ିଆ ଜାତିର ଏକ ଅନବଦ୍ୟ ବିଶ୍ୱକୋଷରେ ପରିଣତ କରିପାରିଛି । ତେବେ ସାଧାରଣ ଭାବେ ଜଗମୋହନ ରାମାୟଣ ପାଠକଲେ ପାଠକର ଦୃଷ୍ଟିକୁ ରଚନାର ଯେଉଁ ଦୁଇଟି ବଳିଷ୍ଠ ଦିଗ ଆପେ ଆପେ ଆସିଯାଇଥାଏ, ତାହା ହେଲା କାବ୍ୟରେ ବର୍ଣ୍ଣିତ ବଳରାମଙ୍କ କାବ୍ୟିକତା ଓ ଭକ୍ତିକତା । ପ୍ରସଙ୍ଗକ୍ରମେ ଆମେ ଏଇ ଦୁଇଟି ବିଭାବର ସଂକ୍ଷିପ୍ତ ଆଲୋଚନା କରିପାରିବା ।

ବଳରାମଙ୍କ କାବ୍ୟିକତା ସମଗ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟ । କଞ୍ଚା ଲୋକକଥିତ ଓଡ଼ିଆ ଭାଷାକୁ ବଳରାମ କାବ୍ୟଭାଷାର ମର୍ଯ୍ୟାଦା ପ୍ରଦାନ କରିଛନ୍ତି । ଲୋକଭାଷାର ଅମାପ ଶକ୍ତିର ପରିଚୟ ପାଠକମାନଙ୍କୁ ପ୍ରଦାନ କରିଛନ୍ତି । ଏଥିପାଇଁ କେତେକ ଆଲୋଚକ ବଳରାମଙ୍କ ରାମାୟଣକୁ ଓଡ଼ିଆ ସାହିତ୍ୟର ଅନ୍ୟତମ ଉତ୍ତୀର୍ଣ୍ଣ ଓ ଲୋକପ୍ରିୟ ମହାକାବ୍ୟ ଆଖ୍ୟା ପ୍ରଦାନ କରିଅଛନ୍ତି ।* ସମାଜର ସବୁଶ୍ରେଣୀର ପାଠକଙ୍କୁ ଏହା ଆନନ୍ଦ ଯୋଗାଇଛି । ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଫଳର ଅଧିକାରୀ କରାଇଛି । କବି ଏହାକୁ ଭକ୍ତି ଓ ମୁକ୍ତି ପ୍ରଦାୟିନୀ ଗ୍ରନ୍ଥ ଭାବରେ ସ୍ୱୀକୃତି ପ୍ରଦାନ କରିଛନ୍ତି । ଭକ୍ତିକତା ସହିତ କାବ୍ୟିକତାର ମଧୁର ସମନ୍ୱୟ କରାଇ 'ଜଗମୋହନ ରାମାୟଣ'କୁ

---

* ବଳରାମ ଦାସଙ୍କ ରାମାୟଣ ଗୋଟିଏ ଲୋକପ୍ରିୟ ମହାକାବ୍ୟ । ପଲ୍ଲୀର ଘରେ ଘରେ ତା'ର ଆଦର । ଶିକ୍ଷିତ, ମୂର୍ଖ, ଧନୀ, ନିର୍ଦ୍ଧନ, ପ୍ରତି ଓଡ଼ିଆର ହୃଦୟ ସିଂହାସନରେ ତା'ର ଆସନ ।–ବଳରାମ ଦାସ ଓ ଓଡ଼ିଆ ରାମାୟଣ, ନରେନ୍ଦ୍ରନାଥ ମିଶ୍ର, ପୃ-୧୨୦

ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିଛନ୍ତି କବି ବଳରାମ ଦାସ । ତାଙ୍କ ପରବର୍ତ୍ତୀ ସମୟରେ ଭକ୍ତି/ଜ୍ଞାନ ଗ୍ରନ୍ଥଗୁଡ଼ିକରୁ ଯେପରି କାବ୍ୟିକତା ପ୍ରାୟ ଅପସରିଗଲା ଓ ଶୁଷ୍କ ଦର୍ଶନ ତଥା ସାଧନାର କଥା ଲିପିବଦ୍ଧ ହେଲା ତାହା ରାମାୟଣରେ ନାହିଁ । ଚଟୁଳ କାବ୍ୟିକତାର ଚରମ ନିଦର୍ଶନ ଗ୍ରନ୍ଥ ଆରମ୍ଭରୁ ଶେଷଯାଏ ଦେଖିବାକୁ ମିଳେ । ଇଷ୍ଟ ବନ୍ଦନାରେ, କଥାବସ୍ତୁର ଉପସ୍ଥାପନାରେ, ମୂଳକଥା ସହିତ ଉପକଥାମାନଙ୍କର ସଂଯୋଜନାରେ, ଚରିତ୍ରମାନଙ୍କ ଅବତାରଣାରେ, ବାହ୍ୟ ଓ ଅନ୍ତଃପ୍ରକୃତିର ବର୍ଣ୍ଣନାରେ, ଶୃଙ୍ଗାର, ବୀର, ହାସ୍ୟ, ଭୟାନକ ଆଦି ନବରସର ସମାବେଶରେ ସର୍ବତ୍ର କବିଙ୍କ ଦିବ୍ୟ କବିତ୍ୱର ସଫଳ ସ୍ପର୍ଶର ପରିଚୟ ମିଳିଥାଏ ।

ବଳରାମଙ୍କ ଇଷ୍ଟଦେବ ଥିଲେ ଶ୍ରୀ ଜଗନ୍ନାଥ । ତାଙ୍କ ବିଚାରରେ ସେ ଥିଲେ ପରମ ବିଷ୍ଣୁ । ଅବତାରୀ ପୁରୁଷ । ତାଙ୍କରି ପ୍ରେରଣାରେ କବି ରାମାୟଣ ଗ୍ରନ୍ଥ ଲେଖିଲେ । ଏଥିରେ ଜଗନ୍ନାଥ କବି ଓ ବଳରାମ ଦାସ ଲେଖନକାର ମାତ୍ର । ସେଥିପାଇଁ ପ୍ରତି କାଣ୍ଡର ଆରମ୍ଭରେ ସେ ଜଗନ୍ନାଥଙ୍କୁ ଓ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସ୍ତୁତି କରିଅଛନ୍ତି । ଆଦିକାଣ୍ଡରେ ଜଗନ୍ନାଥ, ଅଯୋଧ୍ୟାକାଣ୍ଡରେ ଶ୍ରୀଜଗନ୍ନାଥ ଓ ମହାଲକ୍ଷ୍ମୀ, ଆରଣ୍ୟକରେ ବଳଭଦ୍ର, କିଷ୍କିନ୍ଧ୍ୟାରେ ଅଗ୍ନି, ସୁନ୍ଦରାରେ ଶିବ, ଲଙ୍କାକାଣ୍ଡରେ ପୁଣି ଶ୍ରୀଜଗନ୍ନାଥ ଓ ଚତୁର୍ଦ୍ଧାମୂର୍ତ୍ତି ଏବଂ ଉତ୍ତରାକାଣ୍ଡରେ ଶ୍ରୀଜଗନ୍ନାଥଙ୍କ ଜଗମୋହନ ରୂପର ବିସ୍ତାରିତ ବର୍ଣ୍ଣନା କରାଯାଇଛି । ଜଗନ୍ନାଥଧାମର ମହିମା, ସର୍ବଧର୍ମ ସମନ୍ୱୟବାଦୀ ଚିନ୍ତାଧାରା, ଚତୁର୍ଦ୍ଧାମୂର୍ତ୍ତି ମଧ୍ୟରେ ହରି-ହର ବ୍ରହ୍ମାଙ୍କର ଉପସ୍ଥିତି ଆଦି ପ୍ରସଙ୍ଗକୁ କବି ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି । ଇଷ୍ଟସ୍ତୁତି ପରେ ଶିବ-ପାର୍ବତୀଙ୍କ କଥୋପକଥନ ଛଳରେ ରାମାୟଣ କଥାବସ୍ତୁ ବର୍ଣ୍ଣିତ ହୋଇଛି । ବୈଷ୍ଣବ ଆନ୍ଦୋଳନ ସାରା ଭାରତକୁ ବ୍ୟାପିଯିବା ପରେ ଶୈବ ଓ ବୈଷ୍ଣବ ଉପାସକମାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇଥିଲା । ପରସ୍ପର ମଧ୍ୟରେ ଦ୍ୱେଷ ପରିତ୍ୟାଗ କରି ଏମାନେ ପରସ୍ପରର ମିତ୍ର ଓ ଅନୁଗତ ହେବାକୁ ଲାଗିଲେ । ବୈଷ୍ଣବ ଆଗମ ଗ୍ରନ୍ଥମାନ ରଚିତ ହେବାରୁ ଏଥିରେ ଆ-ଗ-ମ ଏଇ ତିନିଅକ୍ଷର ଉପରେ ଗୁରୁତ୍ୱ ଦିଆଗଲା । "ଆଗତଂ ଶିବ ବକ୍ତ୍ରେଭ୍ୟୋ ଗତଂଚ ଗିରିଜା ଶ୍ରୁତୌ, ମତଂଚ ବାସୁଦେବସ୍ୟ ତସ୍ମାତ୍ ଆଗମ ମୁଖତେ ।" – ଶିବ କହିବେ, ପାର୍ବତୀ ଶୁଣିବେ ଏବଂ ବାସୁଦେବଙ୍କ ମତ ପ୍ରଖ୍ୟାପିତ ହେବ ଏହାହିଁ ଆଗମ । ଶିବଙ୍କର ଏକ ନୂତନ ପରିଚୟ ହେଲା ସେ 'ମହାଯୋଗୀ' ଏବଂ 'ପରମ ବୈଷ୍ଣବ' । ସେହି ସାଂସ୍କୃତିକ ଚେତନାର ପ୍ରଭାବ ବଳରାମଙ୍କ ଉପରେ ପଡ଼ିଛି ଓ ଶିବପାର୍ବତୀଙ୍କ ଉକ୍ତି ପ୍ରତ୍ୟୁକ୍ତି ଛଳରେ ସେ ରାମାୟଣ ଗ୍ରନ୍ଥ ବର୍ଣ୍ଣନା କରିଅଛନ୍ତି । ଋଷ୍ୟଶୃଙ୍ଗଙ୍କ ଜନ୍ମ ପ୍ରସଙ୍ଗରୁ ରାମାୟଣର ସୂତ୍ରପାତ ହୋଇଛି ଏବଂ ଉତ୍ତରାକାଣ୍ଡରେ ରାମଚନ୍ଦ୍ରଙ୍କର ବୈକୁଣ୍ଠ ଯାତ୍ରାରେ ଏହାର ପରିସମାପ୍ତି ଘଟିଛି । ବିଷୟକ୍ରମଗୁଡ଼ିକୁ କବି ଏପରି ସୁନ୍ଦର ଭାବରେ ସଜେଇ ରଖିଛନ୍ତି ଯେ କୌଣସି

ସ୍ଥାନରେ ବି ପାଠକର କ୍ଲାନ୍ତି ଜାତ ହୁଏ ନାହିଁ । ମୂଳକଥା ସହିତ ଉପକଥାମାନଙ୍କର ସଂଯୋଜନା ମଧ୍ୟ ପ୍ରସଙ୍ଗକୁ ଅଧିକ ଚମତ୍କାର କରିପାରିଛି । ପାଠକୀୟ କୌତୂହଳକୁ ପ୍ରଶମିତ କରିବା ପାଇଁ କବି ଉତ୍ତରାକାଣ୍ଡରେ ତାଙ୍କ ପୂର୍ବଜ ସାରଳା ଦାସଙ୍କ ପଦାଙ୍କ ଅନୁସରଣ କରି କାବ୍ୟ ବର୍ଣ୍ଣିତ ଚରିତ୍ରମାନଙ୍କର ପୂର୍ନଜନ୍ମ ପ୍ରସଙ୍ଗର ଅବତାରଣା କରିଅଛନ୍ତି । କଥକତାର ଏହି ଚମତ୍କାରିତା ହିଁ ବଳରାମଙ୍କ ରାମାୟଣକୁ ଏଯାବତ୍ ଲୋକପ୍ରିୟ କରି ରଖିଛି ।

ବଳରାମଙ୍କ କାବ୍ୟିକତାର ଅନୁସନ୍ଧାନ ପ୍ରସଙ୍ଗରେ ଆମ ଦୃଷ୍ଟିକୁ ଆସେ ରାମାୟଣର ଚରିତ୍ର ଚିତ୍ରଣ । ବଳରାମଙ୍କ ରାମାୟଣର ମୁଖ୍ୟ ଚରିତ୍ର ରାମ । ସେ ଜଗନ୍ନାଥଙ୍କର ପ୍ରତିରୂପ । ଅସୁର ରାବଣକୁ ସଂହାର କରିବା ପାଇଁ ଦେବତାମାନଙ୍କ ଇଚ୍ଛାରୁ ତାଙ୍କର ଜନ୍ମ । ବ୍ରହ୍ମା ରାମଙ୍କ ଜନ୍ମ ପୂର୍ବରୁ ତାଙ୍କର ଜୀବନବ୍ୟାପୀ କର୍ତ୍ତବ୍ୟ ସମ୍ପର୍କରେ ଏକ ଖସଡ଼ା ପ୍ରସ୍ତୁତ କରିଛନ୍ତି ।

"ବାଳକ କାଳେ ଯଜ୍ଞ ରଖିବୁ ଦେବହରି
ଯୁବକାଳେ ବନସ୍ତ ଯିବୁ ମୁନିଙ୍କ ରକ୍ଷାକରି ।
ବିପିନେ ଭାରିଯା ତୋର ରାବଣ ହରିନେବ
ଦୁଃଖେଣ ଦିନ ତୁ ବଞ୍ଚିବୁ ରାଘବ ।
ଦେବଙ୍କର ନିମିତ୍ତେ ପାଇବୁ ଅନେକ କଷ୍ଟ
ନୋହିଲେ ଅସୁର ନୁହନ୍ତିନା ନଷ୍ଟ ।
ରିକ୍ଷ ବାନର ଯେ ସଇନି ଘେନିଯିବୁ
ମାନବ ରୂପ ଧରି ରାବଣ ମାରିବୁ ।"

*(ଆଦି କାଣ୍ଡ)*

କବି ବଳରାମ ବ୍ରହ୍ମାଙ୍କର ଏଇ ନିର୍ଦ୍ଦେଶ କ୍ରମରେ ରାମ ଚରିତ୍ରର ଭୂମିକାକୁ ଦୁଇଭାଗରେ ବିଭକ୍ତ କରିଛନ୍ତି । ବାଳକାଳେ ଋଷି ବିଶ୍ୱାମିତ୍ରଙ୍କ ଯଜ୍ଞରକ୍ଷା ଏବଂ ଯୁବାକାଳେ ବନବାସ ଓ ମୁନିମାନଙ୍କ ଆଶ୍ରମ ରକ୍ଷା ତଥା ରାବଣ ଦ୍ୱାରା ସୀତା ଅପହୃତ ହେବାରୁ ରାବଣ ବଧ । ଜଗନ୍ନାଥ ବ୍ରହ୍ମାଙ୍କ ଅନୁରୋଧରେ ତାଙ୍କୁ ଉତ୍ତର ଦେଇଛନ୍ତି – 'ଦେବତାମାନଙ୍କ ଉପକାର ଲାଗି ସେ ମନୁଷ୍ୟ ରୂପରେ ଜନ୍ମ ନେବେ । ଅସୁରମାନଙ୍କୁ ମାରିବା ଲାଗି ସେ ଏଥର ଚକ୍ର ପରିବର୍ତ୍ତେ ଧନୁଶର ଧାରଣ କରିବେ । ଏହି ଦୈବୀ ଉଦ୍ଦେଶ୍ୟ ସାଧନ ଲାଗି ସେ ତାଙ୍କର ଇଷ୍ଟଦେବ ଜଗନ୍ନାଥଙ୍କୁ ରାମ ଅବତାରରେ ଜନ୍ମିତ କରାଇଛନ୍ତି । ରାମ ଚରିତ୍ରରେ ସମସ୍ତ ବୈଷ୍ଣବୀ ଗୁଣ ପ୍ରକାଶ ପାଇଛି । ମହାବିଷ୍ଣୁ ମାନବ ରୂପରେ ଜନ୍ମ ନେଇଥିବାରୁ ଧରଣୀ ଆନନ୍ଦିତା ହୋଇଛି । ଦେବତାମାନେ ଆଶ୍ୱସ୍ତ ହୋଇଛନ୍ତି । କବି ତାଙ୍କର କାବ୍ୟନାୟକ ରାମଚନ୍ଦ୍ରଙ୍କ ରୂପ ବର୍ଣ୍ଣନାରେ ଶତମୁଖ ହୋଇଛନ୍ତି ।

"କେ ବୋଲଇ ଦେଖ ବିଶ୍ୱାମିତ୍ର ପାଶେ
ନୂଆ ଦୁର୍ବାଦଳ ପ୍ରାୟେକ ତନୁ ଦିଶେ ।
ଶରଦ ପୂର୍ଣ୍ଣମୀ ଚନ୍ଦ୍ରମା ପ୍ରାୟେ ମୁଖ
ରାଜୀବ ପତ୍ର କି ଦୁଇ ନେତ୍ର ଦେଖ ।
ଆଜାନୁ ବାହୁ ବିସ୍ତାର ବକ୍ଷସ୍ଥଳ
ଫରହର ଉଡ଼ଇ ବସ୍ତ୍ରର ଅଞ୍ଚଳ ।
ଉପରେ ରଙ୍ଗବସ୍ତ୍ର ଅଛଇ ବେଢ଼ାଇଲା
ଧନୁବାଣ ସଖୀ ଗୋ ଯେହାକୁ ମୋହିଲା ।" ଇତ୍ୟାଦି

*(ଆଦି କାଣ୍ଡ)*

ବିଶ୍ୱାମିତ୍ରଙ୍କ ସଙ୍ଗରେ ମିଥିଳାପୁରୀକୁ ବିଜେ ହେବାବେଳେ ମିଥିଳା ନାରୀଙ୍କର ରାମରୂପ ଦର୍ଶନରେ ବ୍ୟାକୁଳତା ମଧ୍ୟଯୁଗୀୟ କାବ୍ୟକାରମାନଙ୍କର ବର୍ଣ୍ଣନାକୁ ମଧ୍ୟ ଅତିକ୍ରମ କରିଯାଇଛି । ମିଥିଳା ରାଜମାର୍ଗରେ ରାମଚନ୍ଦ୍ରଙ୍କୁ ଦେଖିବା ଲାଗି ନାରୀ–ପୁରୁଷ, ଯୁବକ–ଯୁବତୀ, ବୃଦ୍ଧ–ବୃଦ୍ଧାମାନେ ବ୍ୟସ୍ତ ବ୍ୟାକୁଳ ହେବା ଲକ୍ଷଣୀୟ । ଯୌବନୋଜ୍ଜ୍ୱଳ ଅଭିରାମ ରାମ ରୂପର ବର୍ଣ୍ଣନା କରିବା ସହିତ କବି ତାଙ୍କର ଅପୂର୍ବ ବୀରତ୍ୱ, ଅସୀମ ଧୈର୍ଯ୍ୟ, ହୃଦୟଗ୍ରାହୀ ବନ୍ଧୁବତ୍ସଳତା ତଥା ଆଦର୍ଶ ପ୍ରେମିକ, ଆଦର୍ଶ ପତି, ଆଦର୍ଶ ଭ୍ରାତା, ଆଦର୍ଶ ପୁତ୍ର ଏବଂ ସର୍ବୋପରି ଆଦର୍ଶ ରାଜା ଭାବରେ ସାର୍ଥକତା ବର୍ଣ୍ଣନା କରି ଆପଣାର ଚମତ୍କାର କବିତ୍ୱର ପରିଚୟ ଦେଇଛନ୍ତି ।

'ଜଗମୋହନ ରାମାୟଣ'ରେ କବି ରାମ ଚରିତ୍ରର ବର୍ଣ୍ଣନା କରିବା ସହିତ ସୀତା, ଲକ୍ଷ୍ମଣ, ଭରତ, ଦଶରଥ, କୌଶଲ୍ୟା, କୈକେୟୀ, ସୁମିତ୍ରା, ଋଷି ବିଶ୍ୱାମିତ୍ର, ବଶିଷ୍ଠ, ଅତ୍ରି, ଅନସୂୟା, ଶବର ରାଜା ଗୁହକ, ବାନରରାଜା ବାଳୀ, ସୁଗ୍ରୀବ, ସେନାପତି ଅଙ୍ଗଦ, ହନୁମାନ, ଜାମ୍ବବାନ, ଅସୁରରାଜା ବିଭୀଷଣ, ଖଳନାୟକ ରାବଣ ଆଦି ଚରିତ୍ରର ସୁନ୍ଦର ବର୍ଣ୍ଣନା କରିଅଛନ୍ତି । କବିଙ୍କ ଲେଖନୀରେ ପ୍ରତିଟି ଚରିତ୍ର ତାଙ୍କ ନିଜ ନିଜ ସ୍ୱଭାବାନୁଯାୟୀ ନିଚୋଳ ଭାବେ ରୂପାୟିତ ହୋଇପାରିଛନ୍ତି । ପ୍ରତିଟି ଚରିତ୍ରକୁ ବଳରାମ ତା'ର ସ୍ୱଭାବ ସୁଲଭ ଗୁଣ ପ୍ରଦାନ କରି ତଦନୁସାରେ ସୁନ୍ଦର କରିବାକୁ ଚେଷ୍ଟା କରିଛନ୍ତି । ପରୀକ୍ଷା କରି ଦେଖିଲେ ଜାଣିପାରିବା କାବ୍ୟନାୟକ ରାମଚନ୍ଦ୍ରଙ୍କ ପରେ ତାଙ୍କର ସବୁଠାରୁ ପ୍ରିୟ ଚରିତ୍ର ଥିଲା ଖଳନାୟକ ରାବଣ । ବିଷ୍ଣୁଙ୍କର ପ୍ରିୟ ଦ୍ୱାରପାଳ ବିଷ୍ଣୁରୂପ ଧାରଣ କରିଥିବା ଜୟ ଓ ବିଜୟ ଦୁର୍ବାସା ଋଷିଙ୍କ ଅଭିଶାପରେ ରାବଣ ଓ କୁମ୍ଭକର୍ଣ୍ଣ ରୂପେ ଜନ୍ମ ନିଅନ୍ତି । ତାଙ୍କୁ ଅଭିଶାପରୁ ଉଦ୍ଧାର କରିବା ଲାଗି ବିଷ୍ଣୁ ରାମ ରୂପରେ ଏବଂ ମହାଲକ୍ଷ୍ମୀ ସୀତା ରୂପେ ଜନ୍ମ ନିଅନ୍ତି । ମହାଜ୍ଞାନୀ ରାବଣ ଏସବୁ ଭଲଭାବରେ ଜାଣିଥିଲା । ଜାଣିଜାଣି ସେ ସୀତାଙ୍କୁ ଚିତ୍ରକୁଟର ପର୍ଣ୍ଣକୁଟୀରରୁ ହରି ନେଲା । ଯଦି ରାମ ମହାବିଷ୍ଣୁ

ହୋଇଥିବେ ତେବେ ତାଙ୍କ ହାତରେ ମୃତ୍ୟୁବରଣ କଲେ ତା'ର ସ୍ୱର୍ଗପ୍ରାପ୍ତି ହେବ ; ଆଉ ଯଦି ସେ ଜଣେ ସାଧାରଣ ମନୁଷ୍ୟ ହୋଇଥିବେ ତେବେ ତାଙ୍କୁ ମାରି ସେ ଛପନଗଣ୍ଡା ଯୁଗ ଭୋଗ କରିବ । ବିଭୀଷଣ ଯେତେବେଳେ ରାବଣକୁ ଦେବତାମାନଙ୍କ ମେଳି ଓ ରାମଜନ୍ମ ବିଷୟରେ ସୂଚନା ଦେଇଛି ସେତେବେଳେ ଅତ୍ୟନ୍ତ ଦୃପ୍ତ କଣ୍ଠରେ ରାବଣ କହୁଛି –

"ଦେବେ ମେଳି ହେଲେ ମୋହୋର କିସ ହୋଇ
ଶ୍ରୀରାମର ମୋହର ଅପ୍ରୀତି ନୁହଇ ।
ସେ ଅଯୁଧ୍ୟାର ରାଜା ମୁଂ ଲଙ୍କାର ଅଧିପତି
ତାହାର ମୋହୋର କିମ୍ପା ହୋଇବ ଅପ୍ରୀତି ।
ଯଦ୍ୟପି ଦଣ୍ଡ ସେ ବାହିବ ମୋହୋର ଉପରକଇଂ
ସମୁଦ୍ର ଯେଣେ ସେ ପାଇବ ମୋତେ କାହିଂ ।
ଯଦ୍ୟପି ପର୍ବତେ ସେ ପୋତିବ ମହାବଳ
ସେ ସେ ମନିଷ୍ୟ ମୁଂ ଅସୁର ଅଚାର୍ଗଳ ।
ମନୁଷ୍ୟ ହୋଇ ଯେବେ ଆସିବ ମୋତେ ମାରି
ଯେକଇ କନ୍ଧ ତ ନୁହଇ ମୋହରି ।
ଦଶଶିର ଛେଦିଲେ ପୁଣିହିଂ ମୁଣ୍ଡ ଲାଗଇ
କ୍ଷତ୍ରୀ ସମ ମୋତେ ନାହିଂ ଭୂମି ଭାଗଇ ।
ଯଦ୍ୟପି ସମ ମୋତେ ହୋଇବ ରଘୁନାଥ
ତାହାର ବାଣେ ଯେବେ ଦୁଟିବ ମୋର ମାଥ ।
ବିଷ୍ଣୁ ହାଥେ ମଲେ ନିଶ୍ଚିନ୍ତେ ଯିବି ସ୍ୱର୍ଗ
ତେବେ ସେ ପ୍ରାପତ ମୋତେ ହୋଇବ ପୁଣ୍ୟ ଭାଗ ।"

*(ଆଦି କାଣ୍ଡ)*

ବଳରାମ ରାମାୟଣର 'ଆଦି କାଣ୍ଡ'ରେ ରାବଣ ମୁଖରେ ଏହିପରି ଏକ ଭାବବିହ୍ୱଳ ଆତ୍ମପ୍ରକାଶ ପ୍ରଦାନ କରିଛନ୍ତି । ରାବଣ ମହାବୀର । ତପସ୍ୱୀ, ସିଦ୍ଧ–ସାଧକ । ତା'ର ବାହୁବଳ ଓ ସାଧନାବଳ ଉପରେ ତା'ର ଅଖଣ୍ଡ ବିଶ୍ୱାସ । ଏହା ସତ୍ତ୍ୱେ ଯଦି ତାକୁ କିଏ ପରାଭୂତ କରେ ତେବେ ସେ ନିଃସନ୍ଦେହ ଭଗବାନ ବିଷ୍ଣୁ । ବିଷ୍ଣୁଙ୍କ ସହ ଯୁଦ୍ଧ କରି ମୃତ୍ୟୁବରଣ କଲେ ସେ ବିଷ୍ଣୁ ରୂପ ଧାରଣ କରି ବୈକୁଣ୍ଠକୁ ଫେରିଯିବ । 'ଲଙ୍କା କାଣ୍ଡ'ରେ ମନ୍ଦୋଦରୀଙ୍କ ସନ୍ଦେହମୋଚନ କରିବାକୁ ଯାଇ ରାବଣ ଠିକ୍ ସେଇ ଏକା ଉତ୍ତର ପ୍ରଦାନ କରିଛି ।

"ସବୁ ଦେବତାଙ୍କର ସଙ୍ଗତେ ଯୁଦ୍ଧ କଲି
କାହାରିହିଂ ହାଥେ ଅପଚୟେ ନପାଇଲି ।

ଶ୍ରୀରାମଚନ୍ଦ୍ର ଯେବେ ଅଟଇ ନାରାୟେଣ
ସେ ସେ ନାରାଚ୍ଛେ ମୋର ଘେନିବ ପରାଣ ।
ବିଷ୍ଣୁ ନୋହିବେ ଯେବେ ଦଶରଥଙ୍କର ସୁତ
ମୋହୋର ବାଣେ ସେ ହାରିବ ଜୀବତ ।''

ଭକ୍ତିଧର୍ମର ପ୍ରସାର ପରେ କବିଙ୍କ ଚେତନାକୁ ଏହା ପ୍ରଭାବିତ କରିଥିଲା । ତେଣୁ ତାଙ୍କର ରାବଣ ଜଣେ ଦୁଷ୍ଟ, ପାପିଷ୍ଠ, ପରନାରୀ ହରଣକାରୀ, ଦୁରାଚାରୀ ରାକ୍ଷସ ହେବା ଅପେକ୍ଷା ଅଧିକ ପରିମାଣରେ ଜଣେ ନିବୃତ୍ତିକାମୀ ବିଷ୍ଣୁଭକ୍ତରେ ପରିଣତ ହୋଇଛି । କେବଳ ରାମ-ରାବଣ ପରି ମୁଖ୍ୟ ଚରିତ୍ର ନୁହେଁ, ବଳରାମ ରାମାୟଣର ଗୌଣ ଚରିତ୍ରମାନଙ୍କୁ ମଧ ଏତେ ସୁନ୍ଦର କରି ଗଢ଼ିଛନ୍ତି ଯେ ସେମାନେ ପାଠକମାନଙ୍କ ଶ୍ରଦ୍ଧା ଲାଭ କରିପାରିଛନ୍ତି । ଜରତା, ତ୍ରିଜଟା, ତାରା, ମନ୍ଦୋଦରୀ, ଅନସୂୟା, ଅହଲ୍ୟା ଆଦି ଚରିତ୍ରର ରୂପାୟନକୁ ଲକ୍ଷ୍ୟ କଲେ ଆମେ ଏହା ଜାଣିପାରିବା । ମନ୍ଦୋଦରୀ ରାବଣର ଅତି ପ୍ରିୟ ପାଟରାଣୀ । ରାବଣକୁ ସୀତା ହରଣ ନକରିବାକୁ ସେ ବାରମ୍ବାର ଉପଦେଶ ଦେଇଛନ୍ତି । ପୁଣି ରାମ-ରାବଣ ଯୁଦ୍ଧ ଅବସରରେ ସେ ସୀତାଙ୍କୁ ସସମ୍ମାନ ଫେରାଇ ଦେଇ ନିଜେ ଶାନ୍ତିରେ ଲଙ୍କାରେ ବସବାସ କରିବାକୁ ପରାମର୍ଶ ଦେଇଛନ୍ତି । କିନ୍ତୁ ରାବଣ ତାହା ଶୁଣିନାହିଁ । ପରିଣତିରେ ରାମଙ୍କ ବ୍ରହ୍ମାସ୍ତ୍ରରେ ରାବଣର ମୃତ୍ୟୁ ହୋଇଛି । ମନ୍ଦୋଦରୀଙ୍କ ଲାଗି ଏହା ଥିଲା ଅସହ୍ୟ । ସ୍ୱାମୀଙ୍କ ମୃତ୍ୟୁ ସହ ଲଙ୍କାର ରାଜରାଜେଶ୍ୱରୀ ପଦ ଚାଲିଯାଇଛି । କାନ୍ଦି କାନ୍ଦି ଭୂମିରେ ଲୋଟି ପଡୁଥିବା ଲଙ୍କେଶ୍ୱରୀଙ୍କୁ ବିଭୀଷଣ ପ୍ରବୋଧନା ଦେଇଛନ୍ତି ଓ ଲକ୍ଷ୍ମଣଙ୍କ ପରାମର୍ଶ କ୍ରମେ ପାଟରାଣୀ ରୂପେ ଗ୍ରହଣ କରିଛନ୍ତି । ଲଙ୍କାପୁରର ସ୍ୱାର୍ଥକୁ ଦୃଷ୍ଟିରେ ରଖି ମହାରାଣୀ ମନ୍ଦୋଦରୀ ଶୋକ ପରିହାର କରିଛନ୍ତି ଓ ପ୍ରତିଭର୍ତ୍ତା ବିଭୀଷଣଙ୍କୁ ସ୍ୱାମୀ ଭାବେ ସ୍ୱୀକାର କରିଛନ୍ତି ।

''ଯାହା ସେ ବିଧାତା ପୂର୍ବରେ କହିଅଛି
ନିଜ ପ୍ରତିଭର୍ତ୍ତା ବିଭୀଷେଣ ଅଛି ।''

ବଳରାମଙ୍କ କବିତ୍ୱ ଅନୁସନ୍ଧାନର ଅନ୍ୟ ଏକ ଦିଗ 'ଜଗମୋହନ ରାମାୟଣ'ର ପ୍ରକୃତି ଚିତ୍ରଣ । ପ୍ରକୃତିର ନିଚୋଳ ବର୍ଣ୍ଣନା ଜଗମୋହନ ରାମାୟଣର କାବ୍ୟ ସଂଗଠନର ଏକ ମୁଖ୍ୟ ଦିଗ । ମାନବିକ ଆବେଗର ଧାରା ସହିତ ଏହା ଏକାନ୍ତ ଅନ୍ତରଙ୍ଗ ଭାବରେ ଜଡ଼ିତ । ମୂଳ ବାଲ୍ମୀକି ରାମାୟଣରେ ଏପରି ବର୍ଣ୍ଣନା ଦେଖିବାକୁ ମିଳେ ନାହିଁ । କବି ବଳରାମଙ୍କର ଏହା ଥିଲା ସମ୍ପୂର୍ଣ୍ଣ ଏକ ଅଭିନବ ଶୈଳୀ । ତାଙ୍କ ସମୟର ଉତ୍କଳୀୟ ନିସର୍ଗ ଚିତ୍ରର ସାର୍ଥକ ରୂପାୟଣ ମାତ୍ର । ଋଷ୍ୟଶୃଙ୍ଗଙ୍କୁ ଆଣିବାକୁ ଯିବାବେଳେ ବାରାଙ୍ଗନାମାନଙ୍କର ଜଳଯାତ୍ରାକାଳୀନ ଅନୁଭବ ହେଉ, ବର୍ଷାବାସ ସମୟରେ ରାମ-ଲକ୍ଷ୍ମଣଙ୍କ ଦୃଷ୍ଟିରେ ମାଲ୍ୟବନ୍ତ ପର୍ବତର ଦୃଶ୍ୟ ହେଉ କିମ୍ବା ଅଶୋକବନର ବର୍ଣ୍ଣନା ହେଉ

ସର୍ବତ୍ର କବିଙ୍କ ପ୍ରତ୍ୟକ୍ଷଦର୍ଶୀ ଅନୁଭୂତିର ବାସ୍ତବ ଅବତାରଣା ପାଠକମାନଙ୍କ ନିକଟରେ ଏହି ଆନନ୍ଦଦାୟକ ଆୟତନ ଆଣିଦେଇଛି । ପ୍ରକୃତି ବର୍ଣ୍ଣନା ଏଠାରେ ଶୁଷ୍କ କାବ୍ୟିକ ବିଳାସରେ ପରିଣତ ନହୋଇ କଥାବସ୍ତୁ ବର୍ଣ୍ଣିତ ମାନବିକ ଆବେଗ ସହିତ ସଂଯୁକ୍ତ ହୋଇଯାଇଛି । ଋଷିକୁମାର ଋଷ୍ୟଶୃଙ୍ଗଙ୍କୁ ଆଣିବାକୁ ଯାଉଥିବାବେଳେ ବାରନାରୀମାନଙ୍କ ମନରେ ଅନେକ ଆବେଗ ଓ ଆଶଙ୍କା । ସମ୍ପୂର୍ଣ୍ଣ ଅପରିଚିତ ସ୍ଥାନ ପୁଣି ଋଷି ଅଭିଶାପର ଭୟ । ତଥାପି ସାହସିନୀ ବାରାଙ୍ଗନାମାନେ ଦେଶ ଓ ମାନବଜାତିର କଲ୍ୟାଣ ପାଇଁ ରାଜାଦେଶକ୍ରମେ ଅଗମ୍ୟ ନୌଯାତ୍ରାରେ ବାହାରିଛନ୍ତି । ଯାତ୍ରୀଗଣଙ୍କର ଶଙ୍କାକୁଳ ଚିତ୍ତକୁ ନିର୍ଜନ ଅରଣ୍ୟ ପ୍ରକୃତି ପରିବେଶ କିପରି ଗମ୍ଭୀରତର କରିଦେଇଛି ଦେଖନ୍ତୁ । ସୁସଜ୍ଜିତ ନୌକାରେ ଲୋମପାଦ ରାଜା ବାରବନିତାଗଣଙ୍କୁ ବିଦାୟ ଦେଉଛନ୍ତି –

"ପଥେଣ ତୁମ୍ଭଙ୍କୁ ରଖନ୍ତୁ ଦେବୀ ଦୁର୍ଗା
ଯାନ୍ତେ ଅନୁଗ୍ରହ କରନ୍ତୁ ଦେବୀ ଗଙ୍ଗା ।
ବିନାୟେକ ତୁମ୍ଭର ହରନ୍ତୁ ବିଘ୍ନଦୋଷ
ଶ୍ରୀ ମାଧବ ତୁମ୍ଭର ହରନ୍ତୁ କଳ୍ମଷ ।
ଲକ୍ଷ୍ମୀ ନରସିଂହ କରନ୍ତୁ ସଦୟା
ଶ୍ରୀ ପୁରୁଷୋତ୍ତମ ରଖନ୍ତୁ ତୁମ୍ଭର କାୟା ।"

*(ଆଦି କାଣ୍ଡ)*

ଏତେ ମଙ୍ଗଳ ମନାସିଲା ପରେ ନାବିକମାନେ ନାବ ମେଲି ଦେଇଛନ୍ତି । ଭୟ, ଆଶଙ୍କା, ଅଜ୍ଞତା ବିଜଡ଼ିତ ରାଜନବରବାସୀ ନଗର ବିଳାସିନୀ ବାରବଧୂଗଣଙ୍କ ମାନସିକ ଅବସ୍ଥା ସହ କବି ବଳରାମ କିପରି ପ୍ରାକୃତିକ ପରିବେଶକୁ ସାମିଲ କରିଛନ୍ତି ଦେଖନ୍ତୁ –

"ଦୁସହ ଦୁର୍ଗମ ଗହନ ବନେ ଯାନ୍ତି
ଅପୂର୍ବ ପଦାର୍ଥ କୂଳରେ ଦେଖନ୍ତି ।
କାହିଂ ଗଜେ ଗଜେ ହୁଅନ୍ତି ଚଉଦନ୍ତ
କେବଣ ଶାର୍ଦ୍ଦୁଳ ଖେଦଇ ମୃଗନ୍ତ ।
କାହିଂ ଭୃକ୍ଷ ପୋଏ ଖେଳନ୍ତି ଖେଡ଼ରସ
କାହିଂ ହସ୍ତୀ ଦେଖି ବାନରେ ହରଷ ।
କାହିଂ ସୁରତି ଯେ କରନ୍ତି ଗଜବେନି
ନାବକୁ ଚାହିଂ କେ ହୁଅନ୍ତି ଅନ୍ୟୋଅନ୍ୟି ।
କାହିଂ ମତ୍ତହସ୍ତୀକି ବିଦାରଇ ସିଂହ
ସର୍ବାଙ୍ଗ ଶ୍ରୋଣିତ ଦିଶଇ ଦେହରଙ୍ଗ ।"

*(ଆଦି କାଣ୍ଡ)*

ଦୁର୍ଗମ ଅରଣ୍ୟ ମଧ୍ୟରେ ନୌଯାତ୍ରା କାଳରେ ପ୍ରକୃତିର ସନ୍ତାନ ବନ୍ୟଜୀବମାନଙ୍କର ବିବିଧ କ୍ରୀଡ଼ାର ବିସ୍ତୃତ ବର୍ଣ୍ଣନା ଏହି ପ୍ରସଙ୍ଗରେ ଦେଖିବାକୁ ମିଳିଥାଏ । ପ୍ରକୃତି ବର୍ଣ୍ଣନାର ଅନ୍ୟ ଏକ ଜୀବନ୍ତ ରୂପ ଆମେ ଦେଖୁ ମାଲ୍ୟବନ୍ତରେ ବର୍ଷାକାଳର ବର୍ଣ୍ଣନା ପ୍ରସଙ୍ଗରେ । ରାମ ଏହି ସମୟରେ ସୀତା ବିଚ୍ଛେଦରେ ବିରହୀ । ଭାଇ ଲକ୍ଷ୍ମଣ ସହ ଚାତୁର୍ମାସ୍ୟା ବ୍ରତରେ ବ୍ରତୀ । ଆସିଛି ମାଲ୍ୟଗିରି ପର୍ବତକୁ ଋତୁମାନଙ୍କର ରାଣୀ ବର୍ଷା । କବି ବର୍ଷା ବର୍ଣ୍ଣନାରେ ଶତମୁଖ ହୋଇ ଉଠିଛନ୍ତି –

"ଗ୍ରୀଷମ ଋତୁ ଶେଷ ହୋଇଲା ଦିନୁଦିନ
ପ୍ରଥମ ଆଷାଢ଼େ ହୋଇଲା ବରଷଣ ।
ଘଡ଼ଘଡ଼ି କରିଣ ମାରଇ ବିଜୁଳି
ସଦାକାଳେ ଉଦୟେ ଆଦ୍ରାବଳି ।
ହାଥୀମୁଣ୍ଡା ମେଘମାନେ ଗର୍ଜନ୍ତି
ନିର୍ଘାତ ଶବଦେଣ ପର୍ବତେ ଚମକନ୍ତି ।
ଶୀତଳ ପବନ ବହଇ ଚଉକତି
ପୂର୍ବ ଦିଗରୁ ମେଘେ ପଶ୍ଚିମକୁ ଚଳନ୍ତି ।
ଦକ୍ଷିଣ ଦିଗର ମେଘେ ପାଣି ଘେନି ଚଳି
ଉତ୍ତର ଦିଗରେ ନେଇ ବରଷନ୍ତି ତୋଳି ।
ଇନ୍ଦ୍ରଧନୁ ପୁଣ ଉଦୟେ ଘନ ଘନ
ଅସ୍ତକାଳେ ଆଦିତ୍ୟ ଦିଶଇ ରଙ୍ଗବର୍ଣ୍ଣ ।
ଦିବସେ ମଣ୍ଡଳ ଯେ ରାତ୍ରେଣ କୁହୁକ
ପ୍ରଚଣ୍ଡ ପବନ ବହଇ ଝାଙ୍କ ଝାଙ୍କ ।
କ୍ଷଣକେ ଗୁଳଗୁଳି କ୍ଷଣକେ ଶୀତ କରଇ
କ୍ଷଣକେ ଆକାଶରେ ସୂର୍ଯ୍ୟହିଂ ନ ଦିଶଇ ।"

*(କିଷ୍କିନ୍ଧ୍ୟା କାଣ୍ଡ)*

ନାନା ପୁଷ୍ପଫଳ ଶୋଭିତ ପଞ୍ଚବଟୀ ଅରଣ୍ୟର ବର୍ଣ୍ଣନା, ପମ୍ପା ସରୋବରର ବର୍ଣ୍ଣନା, ସମୁଦ୍ରର ବର୍ଣ୍ଣନା, ଋଷ୍ୟମୁଖ ପର୍ବତର ବର୍ଣ୍ଣନା ଆଦିରୁ ଅନେକ ଦୃଷ୍ଟାନ୍ତ ଦିଆଯାଇପାରେ ।

ବଳରାମଙ୍କ କାବ୍ୟିକତାର ଅନ୍ୟ ଏକ ଦୃଷ୍ଟାନ୍ତ ହେଉଛି ରୂପ ବର୍ଣ୍ଣନା । କାବ୍ୟ ବର୍ଣ୍ଣିତ ଚରିତ୍ରମାନଙ୍କୁ ବର୍ଣ୍ଣନା କଲାବେଳେ କବି ସେମାନଙ୍କର ବ୍ୟକ୍ତିତ୍ୱର ବିକାଶ ନିମିତ୍ତ ରୂପ ବର୍ଣ୍ଣନା ପ୍ରଦାନ କରିଛନ୍ତି । ପୁରୁଷ ରୂପ, ନାରୀ ରୂପ, ଯୋଦ୍ଧୃରୂପ, ବନଚର ଶବରମାନଙ୍କ ରୂପ, ବାନର ଓ ଭଲ୍ଲୁକ ଆଦିଙ୍କ ରୂପ ବର୍ଣ୍ଣନା କରିବାରେ ବଳରାମ

ଶତମୁଖ ହୋଇଛନ୍ତି । ରାମଚନ୍ଦ୍ରଙ୍କ ପରି ସୁନ୍ଦର ପୁରୁଷଙ୍କୁ ଦେଖି ମିଥିଳାପୁର ନାରୀମାନଙ୍କର ପ୍ରତିକ୍ରିୟାର ବର୍ଣ୍ଣନା ଯେପରି ଜୀବନ୍ତ ସୂର୍ପଣଖାର ରାବଣ ନିକଟରେ ରାମରୂପର ବର୍ଣ୍ଣନା ମଧ୍ୟ ଅନୁରୂପ । ପୁରୁଷର ବଳିଷ୍ଠ ବ୍ୟକ୍ତିତ୍ୱ ତା'ର ଶାରୀରିକ ଗଠନରୁ ହିଁ ଫୁଟି ବାହାରୁଥାଏ । ନାରୀ ପୁରୁଷର ଏଇ ପୁରୁଷକାର ପ୍ରତି ଲୋଲୁପୀ ହୋଇଉଠେ । କବି ବଳରାମ ପୁରୁଷ ରୂପର ବର୍ଣ୍ଣନା ଜଣେ ରୂପପିଆସୀ ନାରୀ ମୁଖରେ ଯେପରି କରିଛନ୍ତି ତାହା ଯୁଗଯୁଗ ଧରି ନାରୀମନର ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇଥାଏ । ସୂର୍ପଣଖା ରାବଣକୁ କହୁଛି -

"ଜ୍ୟେଷ୍ଠ ଶ୍ରୀରାମ ଯେ ଦୀର୍ଘ ତାର ବାହା
ବୃଷାଳ ବକ୍ଷ ଆନେ ତୁଲାଇବା କାହା ।
କୃଷ୍ଣାଜିନ ଛାଲ ଗଛର ବକଳ
ବିଭୂତି ବିଲୋପନ କଷା ଯେ ଦୁକୁଳ ।
କନ୍ଦର୍ପହୁଂ ଉଗୁଳି ଅଟଇ ତାର ଗୁଣ
ସୁନ୍ଦର ଦେହ ଗୋଟି ମର୍କତ ରସାଣ ।
ଯୁବା ବୟସ ବିକ୍ରମ ସିଂଘ ମୂର୍ତ୍ତି
ଚାଲିବାର ଛଟକ ମତ୍ତଗଜ ଗତି ।"

*(ଆରଣ୍ୟକ କାଣ୍ଡ)*

ରାମରୂପ ଦର୍ଶନାର୍ଥୀ ନାରୀମାନଙ୍କର ଏହିଭଳି ମନସ୍ତାତ୍ତ୍ୱିକ ଚିତ୍ର ପ୍ରଦାନ କରି କବି ବଳରାମ ପୁରୁଷ ରୂପର ଯେଉଁ ପ୍ରଶଂସା କରିଛନ୍ତି ତାହା ସମଗ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟ । ବଳରାମ ଯେ ଖାଲି ପୁରୁଷର ରୂପ ବର୍ଣ୍ଣନା କରିଛନ୍ତି ତାହା ନୁହେଁ ; ରସିକ କବି ମନ ନାରୀ ରୂପ ବର୍ଣ୍ଣନାରେ ମଧ୍ୟ ଅନେକ ସ୍ଥଳରେ ଆପଣାର ପାରଦର୍ଶିତା ପ୍ରଦର୍ଶନ କରିଛି । ଅହଲ୍ୟା ରୂପ, ବେଦମତୀ କନ୍ୟାର ରୂପ, ସୀତା ରୂପ, ମନ୍ଦୋଦରୀ ରୂପ, ମାୟାକନ୍ୟାର ରୂପ, କାମମୋହିନୀ ଓ ଜରତାର ରୂପ, ଉର୍ବଶୀ, ମେନକା ଓ ରମ୍ଭା ଆଦି ଅପ୍ସରୀମାନଙ୍କର ରୂପ ବର୍ଣ୍ଣନାରେ ବଳରାମଙ୍କ ଚମତ୍କାର କଳ୍ପନାଶକ୍ତି ଓ ରସିକତାର ପରିଚୟ ମିଳିଥାଏ । ନଖଶିଖ ବର୍ଣ୍ଣନାର ଯେଉଁ ଚମତ୍କାର ଦୃଷ୍ଟାନ୍ତ ଆମେ ଓଡ଼ିଆ ରୀତିକାବ୍ୟରେ ଦେଖିଥାଉ, ତା'ର ଅୟମାରମ୍ଭ ବଳରାମଙ୍କ ଜଗମୋହନ ରାମାୟଣରେ ହୋଇ ସାରିଥିଲା । ଷୋଡ଼ଶ ଶତାବ୍ଦୀର ଓଡ଼ିଶାରେ ଅଳଂକାର ବ୍ୟବହାରରେ ଏତେ ପ୍ରାବଲ୍ୟ ନଥିଲେ ହେଁ କବି ତାଙ୍କ କାବ୍ୟନାୟିକାମାନଙ୍କର ବର୍ଣ୍ଣନା ପରିପ୍ରେକ୍ଷୀରେ ଉପଲବ୍ଧ ସବୁପ୍ରକାର ଅଳଙ୍କାରର ବ୍ୟବହାର କରାଇବାକୁ ଭୁଲିନାହାନ୍ତି । ସୀତାଙ୍କୁ ରାଜରାଣୀ ବେଶରେ ସଜାଇବାବେଳେ କବି ବଳରାମ ତାଙ୍କ ସମୟର ପାଟରାଣୀମାନଙ୍କର ଅଳଙ୍କାରଗୁଡ଼ିକୁ ଯେପରି ତାଙ୍କର ବିଭିନ୍ନ ଅଙ୍ଗରେ ସଂଯୋଜିତ କରିଛନ୍ତି ତାହା ପାଠକଙ୍କୁ

ମୁଗ୍ଧ କରେ । ଅଳଙ୍କାର ପାଇଁ ଜଳଦେବତା ବରୁଣ ସୁନା ଓ ରତ୍ନମାନ ପ୍ରଦାନ କଲେ । ସେଥିରେ ରାମଚନ୍ଦ୍ର ଜାନକୀଙ୍କ ଅଙ୍ଗକୁ ଶୋଭାପାଇବା ଭଳି ଅଳଂକାର ଗଢ଼ାଇଲେ । କାନରେ ତଡ଼କୀ, ମଥାରେ ବେଣ୍ଡଲ, ପୁଣି ଚଉପାଖରେ ପଦ୍ମକଡ଼ି, ଶିରରେ ମୋତିଜାଲି ଓ ମଥାମଣି, କାର୍ତ୍ତିକ ପୁଞ୍ଜା ପରି ବସଣି, କଣ୍ଠରେ ସାତ ସରି ମୁକୁତାର ହାର, ମଝିରେ ମଝିରେ ନୀଳମଣି ଏବଂ ମାଣିକ୍ୟ ଗୁନ୍ଥା ହୋଇଥାଏ, ହୀରାପୀଢ଼ ମିଶା ପ୍ରବାଳର ମାଳା, ଖାଣ୍ଟି ସୁନାର ଧାନଶିଂସା ମାଳ, ଚଉସରିରେ ବ୍ରହ୍ମଜାତି ହୀରାମାଳ – ସେଥିରେ ମାଣିକ୍ୟର ପଦକ ଲାଗିଥାଏ, ହାରଗୁଡ଼ିକ ଦେବୀଙ୍କ ନାଭି ପର୍ଯ୍ୟନ୍ତ ଲମ୍ବିଥାଏ, ବାହୁରେ ବାହୁଟି, ତାଡ଼, ବିଦ ଶୋଭା ପାଉଥାଏ । ହାତରେ କଙ୍କଣ ଓ ସୁନାଚୁଡ଼ି ଖୁବ୍ ସୁନ୍ଦର ଦିଶୁଥାଏ । କର କଟଟିରେ ମୁଦ୍ଧାର ଜାଲି, ହୃଦୟରେ ଗଜମୋତିର କାଞ୍ଚଲା, କାନ୍ଧରେ ରଂଗପାଟଫୁଲି, କଟିରେ ମେଖଳା, ପାଦରେ ତୋଡ଼ର ଓ ନୂପୁର, ଆଙ୍ଗୁଠିରେ ନବରତ୍ନର ଝୁଣ୍ଟିଆ, ଏମିତି କେତେ ଯେ ଅଳଂକାର ଶ୍ରଦ୍ଧାରେ ରାମଚନ୍ଦ୍ର ପ୍ରେୟସୀ ରାଜରାଣୀ ସୀତାଙ୍କ ଲାଗି ଗଢ଼ିଦେଇଛନ୍ତି, ତା'ର ତୁଳନା ନାହିଁ ।

କବି ଦେବୀ ସୀତାଙ୍କୁ ମହାଲକ୍ଷ୍ମୀ, ପରମ ଲକ୍ଷ୍ମୀ, ମହିଷା ମର୍ଦ୍ଦିନୀ, ନାରାୟଣୀ ଆଦି ନାମରେ ସ୍ତୁତି କରିଥିଲେ ହେଁ ତାଙ୍କର ନାରୀପଣର ସାର୍ଥକତାକୁ କେବେ ଅବହେଳା କରିନାହାନ୍ତି । ଦଗ୍ଧ ହେମଜ୍ୟୋତି ଭଳି ଶରୀର, ନିଷ୍କଳଙ୍କ ଚନ୍ଦ୍ର ପରି ମୁହଁ, ନୀଳୋତ୍ପଳ ଭଳି ନୟନ, ରକ୍ତପଦ୍ମ ବର୍ଣ୍ଣର ହାତ ଓ ପାଦ, ଡାଳିମ୍ବ ଫୁଲ ପରି ଅଧର, କମ୍ବୁ ପରି କଣ୍ଠ, ତିଳକୁସୁମ ନାସା, ପଦ୍ମପତ୍ର ପ୍ରାୟ ଉଦର, ମୃଣାଳ ସ୍ୱରୂପ ବାହୁଲତା, ସିଂହକଟି ଓ ସର୍ବୋପରି ସାରାଶରୀରର ଉଜ୍ଜ୍ୱଳ ଦିବ୍ୟ ଦୀପ୍ତି ଦେବୀ ସୀତାଙ୍କୁ ଜନକ ରାଜସଭାରେ ଏକମାତ୍ର ଆକର୍ଷଣ କରି ଗଢ଼ିତୋଳିଛି । ସୀତା କେବଳ ଜଣେ ସାଧାରଣ କାବ୍ୟନାୟିକା ନୁହନ୍ତି, ସାମବେଦ ସମ୍ଭୂତା ତ୍ରୈଲୋକ୍ୟମୋହିନୀ ଦେବୀ ମଧ୍ୟ । ସୀତା ସ୍ୱୟମ୍ବର କାଳରେ ତାଂକର ଉଜ୍ଜ୍ୱଳ ରୂପବର୍ଣ୍ଣନା ଲକ୍ଷ୍ୟକରାଯାଇପାରେ :

"ତହିଂ ବିଜୟେ କରିଅଛନ୍ତି ଦେବୀ ସୀତା, ଲଲାଟେ ସିନ୍ଦୂର କପାଳେ ଗନ୍ଧଚିତା ।
ନାନା କୁସୁମେଣ ଖୋଷିଅଛି ଖୋଷା, ପୀତ ପଟନୀ ଯେ ଉପରେଣ ଶୋଭା ।
ନୟନେ କଜ୍ଜୋଳ କର୍ଣ୍ଣେ ରତ୍ନକାପ, କଳାରେ ଶୋହୋଇ ଯେ ମୁକୁତା ସରିଚାଷ ।
ନାସାର ଅଗ୍ରରେ ଯେ ଶୋହୋଇ ଗଜମୋତି, ଦେହ ପଟାନ୍ତର ଦଗ୍ଧ ହେମ ଜ୍ୟୋତି ।
ନିକଳଙ୍କ ଚନ୍ଦ୍ରମା ପ୍ରାୟେକ ବଦନ, ରୂପ ଦେଖି କର ଯୋଡ଼ଇ ମଦନ ।
ହୃଦରେ ମଧ୍ୟେ ସପତ ପଦ୍ମ ବସଇ, ଶ୍ରୀମୁଖ ଶତଦଳ କମଳ ବିଘସଂଇ ।
ବେନିକର ସ୍ଥଳେ କମଳ ଦୁଇ ଅଛି, ଚରଣେ ବେନି ପଦ୍ମ ବହଇ ମୃଗାକ୍ଷି ।
ନୀଳ ଉତ୍ପଳ ଜାଣି ନୟନ ଯୁଗଳ, ଯେମନ୍ତେ ବସଇ ସପତ କମଳ ।
ସାମବେଦରୁ ସେ ହୋଇଲା ସମ୍ଭୂତ, ମେଦିନୀ ଦେବୀ ଅଟଇ ତାର ମାତ ।

ସ୍ୱୟେଂ ଚଞ୍ଚଳା ଯେ ଅଛି ବିଜେକର, ତ୍ରୈଲୋକେ ପଟାନ୍ତର ନାହିଁ ସମସରି ।"

(ଆଦି କାଣ୍ଡ)

କବି ବଳରାମ ଜଣେ ରସିକ ଭକ୍ତ ଥିଲେ । ନାରୀ ତାଙ୍କ ଦୃଷ୍ଟିରେ ଥିଲା ସୌନ୍ଦର୍ଯ୍ୟ, ଆନନ୍ଦ, ସେବା, ତ୍ୟାଗ ଓ ପ୍ରଶାନ୍ତିର ଏକ ଉଜ୍ଜ୍ୱଳନ୍ତ ପ୍ରତିମୂର୍ତ୍ତି । ନାରୀ ବିନା ପୁରୁଷ ଜୀବନ ଅସାର୍ଥକ । ନାରୀପୁରୁଷର ସହଯୋଗରେ ଜୀବନ ସଫଳ ହୁଏ । ସଂସାର ସୁଖ ସମୃଦ୍ଧିରେ ଭରିଯାଏ । କବି ବଳରାମ ସେଇ ମହିମାମୟୀ ନାରୀର ପ୍ରଶଂସା କରି ବଳି ମୁଖରେ କହିଛନ୍ତି –

"ସ୍ତିରୀ ବଶ୍ୟ କେ ନୋହିବ ସଂସାରେ<br>
ସ୍ତିରୀ ସେ ସୁଖଦାନୀ ଅଟନ୍ତି ବେଭାରେ ।<br>
ସ୍ତିରୀ ସେ କୁଟୁମ୍ବ ସ୍ତିରୀ ସେ ସାଧେବୀ<br>
ସ୍ତିରୀ ସେ ପୁରୁଷଙ୍କର ଅଟନ୍ତି ବଲ୍ଲଭୀ ।<br>
ସ୍ତିରୀ ନ ଥିଲେ ସେ ପୁରୁଷେ ନଶୋଭାନ୍ତି<br>
ସ୍ତିରୀ ସେ ସଂସାରେ କରନ୍ତି ଉତପତି ।<br>
ସ୍ତିରୀ ହିଂ ସେ ଧର୍ମ ସ୍ତିରୀ ହିଂ ସେ କର୍ମ<br>
ସ୍ତିରୀ ହିଂ ସଂସାରେ ଆଦି ବୀଜ ବ୍ରହ୍ମ ।<br>
ସ୍ତିରୀ ନ ଥିଲେଣ ନୋହଇଟି ସୃଷ୍ଟି<br>
ସ୍ତିରୀକି ଆଗ ଜନ୍ମ କଲେକ ପରମେଷ୍ଠୀ ।<br>
ସ୍ତିରୀ ବଶ ସେ ସକଳ ସୁରଗଣ<br>
ସ୍ତିରୀ ସେ ଅଟନ୍ତି ପୁରୁଷଙ୍କ ବଡ଼ପଣ ।<br>
ସାବେତ୍ରୀକି ହୃଦେ ବହିଛି ପିତାମହ<br>
ତେଣେ ସେ ତାହାର ପବିତ୍ର ଅଟେ ଦେହ ।<br>
ବିଷ୍ଣୁ ହିଁ ଲକ୍ଷ୍ମୀକି ଗଳାରେ ଲମ୍ୱାଇ<br>
ଲକ୍ଷ୍ମୀ ନାରାୟେଣ ବୋଲାନ୍ତି ଜଗତର ସାଇଂ ।<br>
ଈଶ୍ୱର ଅର୍ଦ୍ଧଅଙ୍ଗ ଅଟନ୍ତି ପାର୍ବତୀ<br>
ଅର୍ଦ୍ଧନାରୀଶ୍ୱର ବୋଲାଇ ପଶୁପତି ।"

କବି କହନ୍ତି ଏଇ 'ସ୍ତିରୀ' ବୋଲି ପଦାର୍ଥଟି ଜଗତର ସବୁ ସାରବସ୍ତୁର ଏକତ୍ରୀକରଣରେ ସୃଷ୍ଟି ହୋଇଛି । ସେ ସୁଖଦାୟିନୀ, ସେ ହିଁ ଆଦିବୀଜ ; ଋଷି, ଦେବତା, ଅସୁର ସାରା ସଂସାର ତାଙ୍କରି ବଶୀଭୂତ । ବ୍ରହ୍ମା, ଶିବଙ୍କ ଠାରୁ ଆରମ୍ଭ କରି ବଶିଷ୍ଠ, ବିଶ୍ୱାମିତ୍ର ଆଦି ଋଷି, ଇନ୍ଦ୍ର, ସୂର୍ଯ୍ୟ, ଅଗ୍ନି ଆଦି ଦେବତା, ମହିଷାସୁର, ଶୁମ୍ଭ, ନିଶୁମ୍ଭ ଆଦି ଅସୁର କେହି ବି ସ୍ତ୍ରୀ ମୋହରୁ ରକ୍ଷା ପାଇନାହାନ୍ତି । ତେଣୁ ପାତାଳପୁରୀର

ପୁରୁଷ ଋଷି ଅନନ୍ତ ଦେବତା ବିଶ୍ୱବିଜୟୀ ରାବଣଙ୍କୁ ସତର୍କ କରାଇ ଦେଇଛନ୍ତି ନାରୀ ପ୍ରତି ଅସମ୍ମାନବୋଧରୁ ଦୂରରେ ରହିବା ପାଇଁ, ଅନ୍ୟଥା ଦୁର୍ଗତି ଓ ବିନାଶ ଅପରିହାର୍ଯ୍ୟ । ନାରୀପୁରୁଷର ରୂପ ବର୍ଣ୍ଣନା ଓ ଅଳଙ୍କାର ଆଦିର ବର୍ଣ୍ଣନା ପ୍ରସଙ୍ଗରେ କବି ସମାଜରେ ନାରୀ ଜାତିର ଅନିବାର୍ଯ୍ୟତା ଓ ଗୌରବ ସମ୍ପର୍କରେ ଏହିପରି ଗୁରୁତ୍ୱପୂର୍ଣ୍ଣ ପ୍ରସଂଗ ଉଠାଇ ପାଠକଙ୍କୁ ଆକୃଷ୍ଟ କରିଛନ୍ତି ।

ବଳରାମଙ୍କ ବର୍ଣ୍ଣନାତ୍ମକତା ପାଠକମନକୁ ଭାରାକ୍ରାନ୍ତ କରି ଦେଇଥାଏ ବୋଲି କେତେକ ଆଲୋଚକ ମତ ଦେଇଥାନ୍ତି । 'ଜଗମୋହନ ରାମାୟଣ'ର କଳେବର ବିଶାଳ ହେବା ପାଇଁ ଏବଂବିଧ ବର୍ଣ୍ଣନା ହିଁ ଅନେକାଂଶରେ ଦାୟୀ । କିନ୍ତୁ କବି ବଳରାମ ପ୍ରତ୍ୟେକ ପ୍ରସଙ୍ଗକୁ ଏପରି ନିବିଡ଼ ଭାବରେ ଉପସ୍ଥାପନ କରିଛନ୍ତି ଯେ କୌଣସି ଦୃଶ୍ୟ ତାଙ୍କ ପାଇଁ ଅନାବଶ୍ୟକ ମନେହେଉ ନଥିଲା । ଉର୍ବଶୀ, ମେନକା ବା ରମ୍ଭା ହୁଅନ୍ତୁ କିମ୍ବା ସୀତା, ଅହଲ୍ୟା ବା ମନ୍ଦୋଦରୀ ହୁଅନ୍ତୁ ସମସ୍ତଙ୍କ ପାଇଁ ଏକପ୍ରକାର ଉପମା ଓ ଏକପ୍ରକାର ଅଳଙ୍କାର ସେ ପ୍ରୟୋଗ କରୁଥିଲେ । ଯେଉଁ ନାଟକୀୟ ପରିବେଶରେ କବି ଏମାନଙ୍କୁ କଥାବସ୍ତୁ ମଧ୍ୟକୁ ଅବତୀର୍ଣ୍ଣ କରାଉଥିଲେ, ସେଠାରେ ତାଙ୍କର ରୂପବର୍ଣ୍ଣନା ଅପରିହାର୍ଯ୍ୟ ହୋଇପଡୁଥିଲା । ଖାଲି ଯେ ନାରୀ/ପୁରୁଷର ରୂପ ବର୍ଣ୍ଣନା ଏବଂ ପ୍ରକୃତି ବର୍ଣ୍ଣନାରେ କବି ଏବଂବିଧ ସଫଳତା ଲାଭ କରିଛନ୍ତି ତାହା ନୁହେଁ, ଯୁଦ୍ଧ ବର୍ଣ୍ଣନା, ସୈନ୍ୟସଜ୍ଜା, ସେନା ପ୍ରସ୍ତୁତି, ସୈନ୍ୟ ଗଣନା, ଯୁଦ୍ଧ ଉପକ୍ରମ ଆଦିର ଏକାନ୍ତ ବିସ୍ତାରିତ ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ । ରାମରାବଣ ଯୁଦ୍ଧ ସମୟର ବର୍ଣ୍ଣନାରୁ ଗୋଟିଏ ଛୋଟ ଉଦାହରଣ ଦିଆଯାଇପାରେ । ଗୋଟିଏ ପଟେ ଅଗଣିତ ବିଶାଳ ଅସୁରସେନା, ଏପଟେ ପୁଣି ବାନର ଓ ଭଲ୍ଲୁକମାନଙ୍କର ବିପୁଳ ସେନା । ଦୁଇଦଳ ମୁହାଁମୁହିଁ ହୋଇ ଠିଆହୋଇଛନ୍ତି । ଉତ୍ସାହବର୍ଦ୍ଧକ ବୀରବାଦ୍ୟ ବାଜୁଛି । ସମରକ୍ଷେତ୍ର ଏକ ପୁଣ୍ୟଭୂମି । ଏଠି ମୃତ୍ୟୁରେ ସ୍ୱର୍ଗପ୍ରାପ୍ତି, ବିଜୟରେ ଗୌରବ ବୃଦ୍ଧି । କବି ବଳରାମ ଭାରତୀୟ ସାମରିକ ଚେତନାର ଏଇ ଅର୍ଥକୁ ଭଲଭାବରେ ବୁଝିଥିଲେ । ଗଜପତିବାହିନୀର ବିଶାଳ ସେନାକୁ ସେ ହୁଏତ ଦେଖିଥିବେ । ତେଣୁ ପ୍ରସଙ୍ଗକ୍ରମେ ଯେତେବେଳେ ଯୁଦ୍ଧ ବର୍ଣ୍ଣନା ଆସିଯାଉଛି, ସେତେବେଳେ କବି ନିଜ ଅନୁଭୂତିର ଏକ ନିଖୁଣ ଚିତ୍ର ପ୍ରଦାନ କରିଛନ୍ତି । 'ଲଙ୍କା କାଣ୍ଡ'ର ଏକ ବର୍ଣ୍ଣନା ଦେଖନ୍ତୁ –

"ରଣଗୋଳ ଧନ୍ଦୋଳ ଆରେଣି ଭିତର
ମାର ମାର ଶବଦ ଯେ ଶୁଭଇ ତିନିପୁର ।
ଦୁଇକଡି ନିଶାଣ ଘନଘନ ବାଜେ
ଋକ୍ଷ କପି ରାକ୍ଷସ ସମର ଦେବ କାର୍ଯେ ।
ଉଦଣ୍ଡ ଉଲାଖ ଚାମର ବୀରନେତ

ଝଲଝଲ ବିଲମ୍ବ ପ୍ରଲମ୍ବ ବହୁତ ।
ବିବିଧ ବସ୍ତ୍ର ଶୋହଇ ଶୋଭାବନ
ବିଚିତ୍ର ଗତି ଯୁଦ୍ଧ କରନ୍ତି ଦୁଇ ସନ୍ୟ ।
ଧରାଧରି ମରାମରି ସହସ୍ରେ ପିଟାପିଟି
ମାଲ ବିନ୍ଧାଣେ ପହୁଡ଼ନ୍ତି ମୁଷ୍ଟି ।
ନଖ ଦନ୍ତ ଘାୟେ ବାହାର ରକତ
ସାଂଗ୍ରାମେ ଦୁଇବଳ ହୋଇଛନ୍ତି ମତ୍ତ ।

x x x

ଲକ୍ଷେକ ବୀରଛତ୍ର ଉଡ଼ଇ ଫରହର
ଆଗେ ବାଜୁଅଛି ରଣଜୟେ ମର୍ଦ୍ଦଳ ।
ମୁକୁଟବନ୍ଧା ଯୋଦ୍ଧା ଅଛନ୍ତି ପଚାଶ କୋଟି
ସହସ୍ରେ କୋଟି ଅସୁର ଅଛନ୍ତି ବଳ୍କ ଘୋଟି ।
ଚାଳିଶ ପରାଉଧ ଅଛନ୍ତି ଅଂଗବଳ
ସାଂଗ୍ରାମକୁ ଶରଧା ସଭିୟେ ମହାବଳ ।'' ଇତ୍ୟାଦି

ପ୍ରେମ ବର୍ଣ୍ଣନାରେ ସମ୍ଭୋଗ ଓ ବିପ୍ରଲମ୍ଭ ଦୁଇଟିଯାକ ଦିଗର ଚିତ୍ର 'ଦାଣ୍ଡୀ ରାମାୟଣ'ର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ । ରାମଚନ୍ଦ୍ରଙ୍କର ବିରହୀ ଅବସ୍ଥାର ଚିତ୍ର ବିପ୍ରଲମ୍ଭ ବର୍ଣ୍ଣନାର ଯେଉଁ ସୁନ୍ଦର ଦୃଷ୍ଟାନ୍ତ ସୃଷ୍ଟି କରିଛି, ତାହା ସମଗ୍ର ଗ୍ରନ୍ଥରେ ଅନନ୍ୟ ।

''ଆକାଶକୁ ଚାହିଂଣ ବୋଲନ୍ତି ସୀତ୍ୟାସାଇଂ
ଭୋ ମେଘମାନେ ତୁମ୍ଭର ମୋତେ ଦୟା ନାହିଂ ।
ମୁହିଂ ପରବାସୀ ନିରେଖ ଦେଶାନ୍ତରୀ
ମହାଘୋର ଅରଣ୍ୟେ ମୁଂ ଅଛଇ ବସାକରି ।

x x x

ସର୍ବାଙ୍ଗ ସୁନ୍ଦେରୀ ସେ ମୁଂ ବାଉନିବି କିସ
ଜାଣିଥିଲେ ମେଘମାଳ କହିବ ସନ୍ଦେଶ ।''

*(କିଷ୍କିନ୍ଧ୍ୟା କାଣ୍ଡ)*

କିଂବା 'ଲଙ୍କା କାଣ୍ଡ'ରେ ମାୟାସୀତାର ମୃତ୍ୟୁରେ ଶ୍ରୀରାମଙ୍କ କାରୁଣ୍ୟଭରା ବିଷାଦ ଲକ୍ଷ୍ୟକରିହୁଏ –

''ସଖୀ ସଖୀ ବୋଲି ରୋଦନ୍ତି ଉଚ୍ଚ ସ୍ୱରେ
ନିଜ ଭୁଜ ନେଇ କୋଡ଼ନ୍ତି ହୃଦୟରେ ।
ଆହା ଭାବିନୀରେ ଗୁଣର ଗୁଣନିଧି

ରାଜ୍ୟତପ କାୟା ନୋହିଲା ତ ସିଦ୍ଧି ।
ମରିବି ମରିବି ମୁଂ ଜୀବନେ ନାହିଂ ଆଶ
କେହ୍ନୁଂ ଛିନାଇଲା ଯେତେକ ମୁହାଂସ ।"

କାରୁଣ୍ୟ ରସର ଅବତାରଣାରେ ବଳରାମଙ୍କ କବିତ୍ୱ ସିଦ୍ଧି ଅତୁଳନୀୟ । କୁହାଯାଏ ରାମାୟଣର ଆରମ୍ଭ କାରୁଣ୍ୟରୁ । କ୍ରୌଞ୍ଚ ଦମ୍ପତିର ଦାରୁଣ କ୍ରନ୍ଦନ ହିଁ ବାଲ୍ମୀକିଙ୍କ ହୃଦୟକୁ କରିଥିଲା କରୁଣାର୍ଦ୍ର । ସେହି ଶୋକାଭିଭୂତ ପ୍ରାଣାବେଗରୁ ହିଁ ସୃଷ୍ଟି ହେଲା ରାମାୟଣ । ବଳରାମ ଦାସ ତାଙ୍କ ରାମାୟଣରେ ମଧ୍ୟ ଶୋକ ବର୍ଣ୍ଣନାକୁ କିଛି କମ୍ ଗୁରୁତ୍ୱ ଦେଇନାହାନ୍ତି । ରାମଚନ୍ଦ୍ରଙ୍କ ଅରଣ୍ୟଗମନରୁ ଦଶରଥଙ୍କ ଶୋକ, ପିତୃ ବିୟୋଗ ଶ୍ରବଣରେ ରାମଚନ୍ଦ୍ରଙ୍କ ଶୋକ, ସୀତା ହରଣ ପରେ ରାମଚନ୍ଦ୍ରଙ୍କ ଶୋକ, ବାଳୀ ବଧରୁ ତାରା ଓ ରାବଣବଧରୁ ମନ୍ଦୋଦରୀଙ୍କ ଶୋକ, ବନବାସିନୀ ଦେବୀ ସୀତାଙ୍କ ଶୋକ, ଲକ୍ଷ୍ମଣ ବିସର୍ଜନରେ ରାମଙ୍କ ଶୋକ ଆଦିର ବର୍ଣ୍ଣନା ପାଠକ ପ୍ରାଣକୁ ଶୋକାର୍ଦ୍ର କରି ଦେଇଥାଏ । ସୀତା ବନବାସ ବର୍ଣ୍ଣନାରେ କବିଙ୍କ ଲେଖନୀର ସଫଳତା ଶୀର୍ଷସ୍ଥାନକୁ ସ୍ପର୍ଶ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ ସାହିତ୍ୟରେ ପରବର୍ତ୍ତୀ ସମୟରେ ରାମସୀତାଙ୍କ ଚରିତକୁ ନେଇ ଯେତେ କାବ୍ୟ-କବିତା ରଚନା କରାଯାଇଛି, ସେହିସବୁ ସୃଷ୍ଟିର ସ୍ରଷ୍ଟାଗଣ ବଳରାମଙ୍କ ପାଖରେ ଊଣା ଅଧିକେ ଋଣୀ । ମଧୁସୂଦନଙ୍କ 'ସୀତା ବନବାସ', ଗଙ୍ଗାଧରଙ୍କ 'ତପସ୍ୱିନୀ'ରେ ସୀତାଙ୍କ ଶୋକର ଯେଉଁ ଚମତ୍କାର ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ ତା'ର ମୂଳ ଉତ୍ସ ମଧ୍ୟ ବଳରାମଙ୍କ ରାମାୟଣରେ ସୀତାଙ୍କ ଶୋକ ବର୍ଣ୍ଣନା । ଲକ୍ଷ୍ମଣଙ୍କଠାରୁ ରାମଚନ୍ଦ୍ର ତାଙ୍କୁ ତ୍ୟାଗ କରିଛନ୍ତି ବୋଲି ଶୁଣି ସୀତା ଦୁଃଖରେ ଭାଙ୍ଗିପଡ଼ିଛନ୍ତି । ରାମଚନ୍ଦ୍ରଙ୍କ ସୁଗୁଣ ବାହୁନି ବାହୁନି କାନ୍ଦିଛନ୍ତି । ଲକ୍ଷ୍ମଣଙ୍କୁ ଭାଇଙ୍କ ସେବା ସବୁବେଳେ କରୁଥିବ ବୋଲି ଉପଦେଶ ଦେଇଛନ୍ତି । ବିନା ଦୋଷରେ ସ୍ୱାମୀ ତାଙ୍କୁ ତ୍ୟାଗ କରିଥିବାରୁ ଯେପରି ନିନ୍ଦିତ ନହୁଅନ୍ତୁ, ସେଥିପାଇଁ ପ୍ରାର୍ଥନା କରିଛନ୍ତି । ରାମଚନ୍ଦ୍ର ତାଙ୍କ ପ୍ରଜାମାନଙ୍କୁ ପୁତ୍ର ପରି ପାଳନ୍ତୁ । ତାଙ୍କରି ସୁଖରେ ସୀତା ଅରଣ୍ୟରେ ସୁଖ ପାଇବେ । ପୁଣି ତାଙ୍କର ମନେପଡ଼ିଛି ତିନିଭଉଣୀ, ସଖୀ ମନମାୟା ଓ ଶାଶୂମାନଙ୍କ କଥା । ସମସ୍ତଙ୍କ ବିଷୟ ମନେପକାଇ ସୀତା କାନ୍ଦିବାକୁ ଲାଗିଛନ୍ତି । ଲକ୍ଷ୍ମଣ ସୀତାଙ୍କର ଏ ବିମର୍ଷ ରୂପ ବେଶି ସମୟ ଦେଖିପାରି ନାହାନ୍ତି । ଗଙ୍ଗା ତୀରରୁ କ୍ରମେ ପଛଘୁଞ୍ଚା ଦେଇ ସେ ନୌକା ପାରହୋଇ ଅଯୋଧ୍ୟା ଚାଲିଯାଇଛନ୍ତି । ରଥ ଅଦୃଶ୍ୟ ହେବାରୁ ସୀତାଙ୍କ ଶୋକ ବଢ଼ିଯାଇଛି । କବି ବଳରାମ ଏଇ ପ୍ରସଙ୍ଗର ବର୍ଣ୍ଣନା କରି ଲେଖିଛନ୍ତି –

"ସେ କୂଳେ ସୀତ୍ୟା ଅନାଇଣ ଥିଲା
ରଥ ବାହୁଡ଼ିବା ଦେଖି ରୋଦନ ସେ କଲା ।
ସ୍ୱାମୀ ସ୍ୱାମୀ ବୋଲି କାନ୍ଦିଲା ଉଚ୍ଚସ୍ୱରେ
ଯେକା ନାରୀ ଶୋକ କଲା ବନଘୋରେ ।

ବନଜନ୍ତୁମାନେ ହୋଇଲେ ଆକୁଳ
ବୃକ୍ଷରୁ ଝଡ଼ିଣ ପଡ଼ିଲେ ଫୁଲଫଳ ।"

(ଉତ୍ତରା କାଣ୍ଡ)

କବି ବଳରାମ ସୀତାଙ୍କୁ ଯେପରି ଜଣେ ଆଦର୍ଶ ପତ୍ନୀ, ଆଦର୍ଶ ଗୃହିଣୀ, ଆଦର୍ଶ ମାତା ଭାବେ 'ଜଗମୋହନ ରାମାୟଣ'ରେ ରୂପାୟିତ କରିଛନ୍ତି ତାହା ତାଙ୍କ ଚରିତ୍ରର ମହନୀୟତାକୁ ପ୍ରତିପାଦିତ କରିପାରିଛି । ଗୋଟିଏ କଥାରେ କହିଲେ ଠିକ୍ ହେବ ପତିପରିତ୍ୟକ୍ତା ଏକାକିନୀ ଅରଣ୍ୟବାସିନୀ ଦେବୀଙ୍କର ଶୋକାଗ୍ନି ମଧ୍ୟରେ ଭାରତୀୟ ନାରୀର ଆଦର୍ଶ ଶୁଦ୍ଧ ସୁବର୍ଣ୍ଣ ପରି ଉଜ୍ଜ୍ୱଳି ଉଠିଛି । ଶୋକାର୍ତ୍ତ ସୀତାଙ୍କର ଏବଂବିଧ ରୂପକୁ ଦେଖିଲେ, କରୁଣରସର ଉପସ୍ଥାପନାରେ କବି ବଳରାମଙ୍କ ନିପୁଣତା ହୃଦୟଙ୍ଗମ କରିହୁଏ ।

## । ଚାରି ।

ଜଗମୋହନ ରାମାୟଣ ସଂଗଠନରେ କବି ବଳରାମଙ୍କ ଅନ୍ୟ ଏକ ବିଶେଷତ୍ୱ ହେଉଛି କବିଙ୍କ ଭକ୍ତିକତା । ଓଡ଼ିଶାରେ ଷୋଡ଼ଶ ଶତାବ୍ଦୀ ଭକ୍ତିଯୁଗର ପ୍ରଚଣ୍ଡ ମଧ୍ୟାହ୍ନ । ଜୟଦେବଙ୍କ ଗୀତଗୋବିନ୍ଦ ରଚନା କାଳରୁ ଆରମ୍ଭ ହୋଇଥିବା ଭକ୍ତିବାଦ କ୍ରମେ ସ୍ୱାଧୀନ ସୂର୍ଯ୍ୟବଂଶୀ ଗଜପତି ରାଜାମାନଙ୍କର ଶ୍ରଦ୍ଧାରୁ ସମଗ୍ର ସମାଜଜୀବନକୁ ଭକ୍ତିଧାରାରେ ଆର୍ଦ୍ର କରି ଦେଇଥିଲା । ଓଡ଼ିଶାରେ ଭକ୍ତିଧାରାର ଆଦି ଉତ୍ସ ଥିଲେ ରାଜ୍ୟର ରାଷ୍ଟ୍ରଦେବତା ଜଗନ୍ନାଥ । ବିଭିନ୍ନ ସମୟରେ ବିଭିନ୍ନ ଧର୍ମ ଓ ବିଚାରଧାରାରେ ସିଦ୍ଧ ଏହି ମହାଦେବତା ଆଦିବାସୀ, ଜୈନ, ବୌଦ୍ଧ, ଶୈବ, ଶାକ୍ତ, ତାନ୍ତ୍ରିକ ଭାବନା ଦେଇ ଶେଷରେ ବୈଷ୍ଣବ ଭକ୍ତିଭାବନା ସହିତ ସଂଯୋଜିତ ହୋଇଯାଇଥିଲେ । ଗଙ୍ଗବଂଶର ନରପତିଗଣ ବହିରାଗତ ହୋଇଥିବାରୁ ଓଡ଼ିଶାମାଟିକୁ ଶାସନ କରିବା ପାଇଁ ଜଗନ୍ନାଥଙ୍କୁ ଜାତୀୟ ଦେବତା ଭାବରେ ଘୋଷଣା କରିଥିଲେ । ଗଙ୍ଗରାଜାଙ୍କର କୁଳଗୁରୁ ରାମାନୁଜାଚାର୍ଯ୍ୟ ଜଗନ୍ନାଥଙ୍କୁ ମହାବିଷ୍ଣୁରେ ପରିଣତ କଲେ ଏବଂ ଭଗବତୀ ଲକ୍ଷ୍ମୀ/ଶ୍ରୀଙ୍କୁ ତାଙ୍କର ମହାଶକ୍ତି ରୂପେ ପ୍ରତିଷ୍ଠା କଲେ । କେଉଁ ଆବହମାନ କାଳରୁ ପ୍ରଚଳିତ ହୋଇଆସିଥିବା 'ବିମଳା' ଭୈରବୀ ଏବଂ 'ଜଗନ୍ନାଥ' ଭୈରବ ଭାବନା ପରିବର୍ତ୍ତିତ ହୋଇଗଲା । ପୂଜା, ଉପାସନା, ଉତ୍ସର୍ଗ, ସମର୍ପଣ, ସାଧନା ଓ ନୀତି ଉପରେ ପର୍ଯ୍ୟବସିତ ଜଗନ୍ନାଥ ଧର୍ମ କ୍ରମେ ବିବର୍ତ୍ତିତ ହୋଇ ଏକ ସହଜ, ସରଳ ଭକ୍ତିଧର୍ମରେ ପରିଣତ ହେଲା ।

ଆଲୋଚକମାନଙ୍କ ମତରେ ଏହି ଭକ୍ତିଧର୍ମର ଧାରା ଦକ୍ଷିଣ ଭାରତର ଦ୍ରାବିଡ଼ ପ୍ରଦେଶରୁ ଆରମ୍ଭ ହୋଇ କ୍ରମେ କର୍ଣ୍ଣାଟ, କଳିଙ୍ଗ, ବଙ୍ଗ ଆଦି ଦେଇ ସାରା ଭାରତକୁ

ପରିବ୍ୟାପ୍ତ ହୋଇଯାଇଥିଲା । ଭାରତୀୟ ସମାଜରେ ପ୍ରତିଷ୍ଠିତ ବ୍ରାହ୍ମଣ୍ୟ ଧର୍ମର ଅବକ୍ଷୟ ହିଁ ଥିଲା ଏହାର ଅନ୍ୟତମ କାରଣ । ତତ୍‌ସହିତ ବୈଦେଶିକ ଆକ୍ରମଣ, ବାଣିଜ୍ୟ ବ୍ୟବସାୟର ଅବନତି, ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ କୃଷିରେ କ୍ଷତି, ଉତ୍ପାଦନର ଦୁଃସ୍ଥିତି ଯୋଗୁଁ ରାଜ୍ୟଗୁଡ଼ିକର ଆର୍ଥିକ ଅବସ୍ଥାର ଦୁର୍ଗତି ସମାଜ ଜୀବନର ମେରୁଦଣ୍ଡକୁ ଦୋହଲାଇ ଦେଇଥିଲା । ଫଳତଃ ସମାଜକୁ ନିୟନ୍ତ୍ରଣ କରୁଥିବା ରାଜା ଓ ବ୍ୟବସ୍ଥାର ରକ୍ଷାକବଚ ବ୍ରାହ୍ମଣମାନେ ସ୍ୱାର୍ଥପର, ସୁବିଧାବାଦୀ, ବିଳାସପ୍ରିୟ ଓ ହୀନମନ୍ୟ ହୋଇଗଲେ । ସମାଜର ସୁପରିଚାଳନା ଲାଗି ସୃଷ୍ଟି ହୋଇଥିବା ଜାତିପ୍ରଥା କ୍ରମେ ସମାଜକୁ ଭାଗଭାଗ କରିଦେଲା । ଉଚ୍ଚଜାତି ଓ ନୀଚଜାତି ପରି ଦୁଇଟି ମନ୍ଦ ଭାବନା ସମାଜରେ ବ୍ୟାପିଲା । ବହୁ ପ୍ରାଚୀନ କାଳରୁ ବିକଶିତ ହୋଇ ଆସିଥିବା ଏକ ସମତୁଲ ସମାଜ ଏହାର ପ୍ରଭାବରେ ଭୟଙ୍କର ଅସମତୁଲ ଭାବନାର ଶିକାର ହୋଇପଡ଼ିଲା । ଅଳ୍ପ କେତେକ ଚତୁର ତଥାକଥିତ ଉଚ୍ଚବଂଶଜ ଲୋକେ ସମାଜର ଏକ ବୃହତ୍ତର ଅଂଶକୁ ଆପଣାର ସେବାକାରୀ କରି ରଖିବାର ଏକ ସାମନ୍ତୀୟ ମନୋବୃତ୍ତିର ବଶବର୍ତ୍ତୀ ହେଲେ । ସମାଜର ସବୁ ସୁଖ/ସୁବିଧାର ପ୍ରଥମ ହକ୍ ଏଇ ଅଳ୍ପସଂଖ୍ୟକଙ୍କ ହାତରେ ରହିଲା । ଏଇମାନେ ଶାସ୍ତ୍ର (ଧର୍ମଶାସ୍ତ୍ର) ତିଆରି କଲେ ଓ ସେଥିରେ ନାନାଦି ନୂଆ ନୀତି ବିଧାନମାନ ଖଞ୍ଜିଦେଲେ । ସାଧାରଣ ବୃହତ୍ତର ସଂପ୍ରଦାୟକୁ ନାନା ଭାବରେ ଭୟଭୀତ କରି ଏମାନେ ଅର୍ଥହୀନ ପୂଜା, ପାର୍ବଣ, ତାନ୍ତ୍ରିକତା, ବଳି ଉତ୍ସବ ଆଦିରେ ନିୟୋଜିତ କରି ରଖିଲେ । ସାମାଜିକ ଜୀବନର ସବୁ ଉଚ୍ଚ ଆଦର୍ଶ ଧୂଳିସାତ୍ ହୋଇଗଲା । ଏହିପରି ଏକ ଦୟନୀୟ ଦ୍ୱିଧାଗ୍ରସ୍ତ ସମୟରେ ଦକ୍ଷିଣ ଭାରତରୁ ଆବିର୍ଭୂତ ହେଲା ଭକ୍ତିଧର୍ମ । ଭକ୍ତିର ମୂଳ ଆଧାର ହେଲା ପ୍ରେମ, ସଖ୍ୟ, ସହୃଦୟତା, ଭଲପାଇବା । ସମାଜର ସବୁଶ୍ରେଣୀର ଲୋକଙ୍କ ମଧ୍ୟରେ ପାରସ୍ପରିକ ଶ୍ରଦ୍ଧାର ବିକାଶ ଘଟାଇ ଜାତିଗତ ବିଦ୍ୱେଷର ବିଲୋପ ସାଧନ କରିବା ଥିଲା ଏହାର ଉଦ୍ଦେଶ୍ୟ । କୁହାଯାଏ ଭାରତୀୟ ଭକ୍ତି ଧର୍ମ ଏଇ ସମୟରେ ମୁସଲମାନ ସୁଫିମାନଙ୍କ ଠାରୁ ପ୍ରେମ ଓ ଖ୍ରୀଷ୍ଟିୟାନ୍ ପାଦ୍ରି ପ୍ରଚାରକମାନଙ୍କ ଠାରୁ ଶ୍ରଦ୍ଧା, ସମର୍ପଣ ଓ ତ୍ୟାଗ ପରି ଗୁଣ ଆହରଣ କରିଥିଲା ।

ସମାଜଜୀବନରେ ଭକ୍ତିଧାରାର ପ୍ରଚାର ଫଳରେ ସୃଷ୍ଟି ହୋଇଥିବା ନବଜାଗରଣକୁ କେହି କେହି ବ୍ରାହ୍ମଣ୍ୟବାଦର ବିରୋଧୀ ବୋଲି କହିଥାନ୍ତି । ସାଧାରଣ ଅବହେଳିତ ସଂପ୍ରଦାୟର ଉତ୍‌ଥାନ ଯୋଗୁଁ ଏପରି ହେଲା ବୋଲି ସେମାନେ ଯୁକ୍ତି କରିଥାନ୍ତି । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ଏହି ଭକ୍ତମାନେ ହିଁ ଥିଲେ ସେ ସମୟର ଯଥାର୍ଥ ଚିନ୍ତାନାୟକ । ସମୟ ଓ ପରିବେଶର ଆବଶ୍ୟକତାକୁ ଭଲରୂପେ ବୁଝି ଏମାନେ ସାଂସ୍କୃତିକ ସମନ୍ୱୟ ଲାଗି ଜୀବନବ୍ୟାପୀ ସାଧନା କରିଥିଲେ । ସାଧାରଣ ଲୋକଙ୍କର ବୋଧଗମ୍ୟ ଲୋକଭାଷାରେ ଏମାନେ ପୁରାଣ, ଧର୍ମଶାସ୍ତ୍ର ଓ ନୀତିଶାସ୍ତ୍ର ଆଦି ରଚନା

କରିବାକୁ ଲାଗିଲେ । ସାଂସ୍କୃତିକ ଜୀବନ ଉପରେ ସବୁ ଜାତିର ଅଧିକାର ରହିଲା । ପଙ୍‌କ୍ତିଭୋଜନରେ ସବୁ ଜାତିର ଲୋକେ ବସି ଭୋଜନ କଲେ । ଜାତିଭେଦ ଦୂର ହୋଇଗଲା । ଭକ୍ତର ଜାତି ବା କ'ଣ, ତା'ର ପରିଚୟ ଭକ୍ତ ମାତ୍ର । ଦାସୀପୁତ୍ର ବିଦୁର, ଶବର ଗୁହକ, ଆଦିବାସୀ ଶବରୀ, ଅନୁନ୍ନତ ଭଲ୍ଲୁକ ଓ ବାନର ସମ୍ପ୍ରଦାୟ, ଯବନ ହରିଦାସ, ମୂର୍ଖମୂକ ହରି ସମସ୍ତଙ୍କୁ ଗୋଟିଏ ସୂତ୍ରରେ ବାନ୍ଧି ପ୍ରଭୁଙ୍କର ପରମ ଆତ୍ମୀୟରେ ପରିଣତ କରିଦେଲେ ଭକ୍ତ ସାଧକ କବିମାନେ । ଖାଲି ଓଡ଼ିଶା ନୁହେଁ ସମଗ୍ର ଭାରତବର୍ଷରେ ସେତେବେଳେ ଏହି ପ୍ରବାହ ପରିଲକ୍ଷିତ ହୋଇଥିଲା । ଦକ୍ଷିଣରେ ଅଲୱାର ସନ୍ଥମାନେ ଏହାର ମୂଳଭିତ୍ତି ସ୍ଥାପନ କଲେ । ପରେ ପରେ ଉତ୍ତର ଭାରତରେ କବୀର, ନାନକ, ଦାଦୁ, ରଜ୍ଜବ, ବଙ୍ଗଦେଶରେ ଚୈତନ୍ୟ, ଆସାମରେ ଶଙ୍କରଦେବ, ମାଧବଦେବ, ମହାରାଷ୍ଟ୍ରରେ ଏକନାଥ, ତୁକାରାମ ଓ ଜ୍ଞାନଦେବ, କର୍ଣ୍ଣାଟକରେ ପୁରନ୍ଦର ଦାସ ଏବଂ ଓଡ଼ିଶାରେ ବଳରାମ, ଜଗନ୍ନାଥ, ଅଚ୍ୟୁତ ଆଦି ପଞ୍ଚମହାପୁରୁଷ ତଥା ତାଙ୍କର ଅନୁଗାମୀଗଣ ଭକ୍ତିଧାରାର ବ୍ୟାପକ ପ୍ରଚାର କରାଇଥିଲେ ।

ଭକ୍ତକବିମାନଙ୍କର ଦୃଷ୍ଟି ଥିଲା ଧର୍ମର ଦୃଷ୍ଟି । ଏହା ଭାରତବର୍ଷର ଚିରନ୍ତନ ଆଦର୍ଶ ସେବିତ ଧର୍ମ । ଏହାକୁ କେନ୍ଦ୍ର କରି ଭକ୍ତି ସାହିତ୍ୟର ବିକାଶ ଘଟିଥିଲା । ଫଳରେ ସାଧାରଣ ଜନତାଙ୍କ ମାନସିକ ବିକାଶ ସାଧିତ ହେଲା । ହୀନମନ୍ୟତା ଓ ସଂସ୍କୃତିହୀନତାର ଦାରୁଣ ଅବକ୍ଷୟ ଭିତରୁ ସେମାନେ ରକ୍ଷା ପାଇଗଲେ । ଖିଆଲୀ ଶାସକ ଓ ସୁବିଧାବାଦୀ ବ୍ରାହ୍ମଣଙ୍କ ଉତ୍ପୀଡ଼ନରୁ ସେମାନଙ୍କୁ ରକ୍ଷା ମିଳିଗଲା । ରାମ, କୃଷ୍ଣ, ଜଗନ୍ନାଥ ଆଦି କୌଣସି ଜଣେ ଦେବତାଙ୍କୁ ଆଶ୍ରୟ କରି ଏକ ଗ୍ରହଣଯୋଗ୍ୟ ଭକ୍ତିମାର୍ଗର ଛାୟାରେ ସମାଜର ସବୁଶ୍ରେଣୀର ଲୋକଙ୍କ ମଧ୍ୟରେ ଐକ୍ୟ ଓ ସଂହତି ପ୍ରତିଷ୍ଠିତ ହେଲା । ଉଚ୍ଚ ବଂଶଜମାନଙ୍କ ବିରୋଧ ସତ୍ତ୍ୱେ ସମାଜର ଏଇ ଅବହେଳିତମାନଙ୍କ ନିକଟରେ ଭକ୍ତ କବିମାନେ ବିପ୍ଳବୀ ବନ୍ଧୁରୂପ ଧରି ଠିଆହେଲେ । ଅବହେଳିତ ବୃହତ୍ତର ସଂପ୍ରଦାୟଙ୍କର ଅବରୁଦ୍ଧ ମୁକ୍ତିର ମାର୍ଗ ଉନ୍ମୋଚିତ ହୋଇଗଲା । ଅନ୍ତର ମଧ୍ୟରେ ଥିବା କୁଣ୍ଠିତ ହୀନମନ୍ୟତା ତଥା ସଂକୀର୍ଣ୍ଣତା ଦୂର ହୋଇଗଲା । ସାଧାରଣ ବ୍ୟକ୍ତିଟି ଅସାଧାରଣ ଆତ୍ମଜ୍ଞାନୀ ଭକ୍ତରେ ପରିଣତ ହେଲା । ଆତ୍ମଜ୍ଞାନର ଆଲୋକରେ ସେ ନିଜ ଭିତରେ ତା'ର ପରମ ପ୍ରିୟତମ ପ୍ରଭୁଙ୍କୁ ଦେଖିପାରିଲା । ତାହାହିଁ ହେଲା ତା'ର ଚରମସିଦ୍ଧି । ପରମ ଉପଲବ୍ଧି ।

କବି ବଳରାମଙ୍କ ଆବିର୍ଭାବ ଓ ରାମାୟଣ ରଚନା ଏହି ସାଂସ୍କୃତିକ ପ୍ରେକ୍ଷାପଟରେ ହୋଇଥିଲା । ସେ ଜଗନ୍ନାଥଙ୍କୁ ତାଙ୍କ ଭିତରେ ଦେଖିପାରୁଥିଲେ । ଜଗନ୍ନାଥଙ୍କ ନିକଟରେ ଆପଣାକୁ ସଂପୂର୍ଣ୍ଣ ରୂପେ ସମର୍ପିତ କରି ଦେଇଥିଲେ । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଭେଦ ନଥାଏ । ଭକ୍ତ ଭଗବାନଙ୍କୁ ତା'ର ପିତା, ମାତା, ବନ୍ଧୁ, ସଖା, ସୁହୃଦ୍ ଓ ପ୍ରେମିକ ସବୁକିଛି ମନେକରିଥାଏ । ଅଭାବ, ଦୁଃଖ ପଡ଼ିଲେ ତାଙ୍କୁ କହେ । ମନରେ କ୍ରୋଧ

ଆସିଲେ ତାଙ୍କୁ ଗାଳିଦିଏ । ପୁଣି ପ୍ରିୟତମଙ୍କୁ ଏତେ ଗାଳିଦେଲି ବୋଲି ଦୁଃଖ ପ୍ରକାଶ କରି କାନ୍ଦେ । କାନ୍ଦୁ କାନ୍ଦୁ ପୁଣି ହସେ । ହସୁ ହସୁ ପୁଣି ଭଗବାନଙ୍କୁ ନିଜର ସଖା ମନେକରି ମନକଥା ସବୁ ଖୋଲି କହିଦିଏ । ବଳରାମଙ୍କ 'ଭାବ ସମୁଦ୍ର' ଏହିପରି ଏକ ରଚନା । ରାମାୟଣରେ ସେ ପ୍ରଭୁଙ୍କୁ ହୃଦୟ ସିଂହାସନରେ ବସାଇ ଲେଖି ଚାଲିଛନ୍ତି । ପଦ ପ୍ରଭୁ ସ୍ମରଣ କରାଇ ଦେଉଛନ୍ତି । ସେ ଲେଖିଚାଲିଛନ୍ତି । ଯେଉଁଠି ପ୍ରସଙ୍ଗ ସରୁଛି, ନୂଆ ପ୍ରସଙ୍ଗ ଆସୁଛି ସେଠାରେ ସନ୍ଧି ଉପୁଜିଛି । ସନ୍ଧିରୁ ରକ୍ଷା ପାଇବା ପାଇଁ କବି ପ୍ରଭୁଙ୍କୁ ପୁଣି ସ୍ତୁତି କରିଛନ୍ତି । ଏହି କହିବା-ଲେଖିବା କ୍ରମରେ କବି ଓ ପ୍ରଭୁ ହୋଇଯାଇଛନ୍ତି ଏକ ଏବଂ ଅଭିନ୍ନ । ଏବେ ଆଉତ କବି ନାହାନ୍ତି, ଅଛନ୍ତି ସ୍ୱୟଂ ପ୍ରଭୁ । ଶୟନ, ସ୍ୱପନ, ଜାଗରଣ, ଚିନ୍ତା, ବାକ୍ୟ, ଅଧଃଉର୍ଦ୍ଧ୍ୱ, ଅଗ୍ର, ପଶ୍ଚାତ୍ ସର୍ବତ୍ର ସେହି ସର୍ବବିଦ୍ୟମାନ ପ୍ରଭୁ । କବି ଲେଖୁଛନ୍ତି -

"ଜଗନ୍ନାଥ ଦେଖିବି ଚାହିଂବି ଜଗନ୍ନାଥ, ଜଗନ୍ନାଥ ଛାମୁରେ ଯୋଡ଼ିବି ଦୁଇହାତ ।
ଜଗନ୍ନାଥ ବୋଲି ମୁଂ ବଞ୍ଚଇ ହାଦେ ଦିନ, ଜଗନ୍ନାଥ ବିନୁ ଆନେ ନବଳଇ ମନ ।
ଜଗନ୍ନାଥ ଶରଣ ମୁଂ ଜଗନ୍ନାଥ ଶାଖା, ଜଗନ୍ନାଥ ବିନୁ ମୋର ଆନେ ନାହିଂ ଲେଖା ।
ଜଗନ୍ନାଥ ମୋହର ପ୍ରାଣର ଆଦିପତି, ଜଗନ୍ନାଥ ବିନୁ ମୁଂ ଆନେ ନପାଇବି ମୁଗତି ।
ଜଗନ୍ନାଥ ବିତର୍କେ ନାହିଂ ଆନ ସୁଖ, ଜଗନ୍ନାଥ ମୋହର ଅଟନ୍ତି ପଞ୍ଚଭୂତ ।
ଜଗନ୍ନାଥ ସୁନ୍ଦର ମୁଖ ଚାହିଂଚାହିଂ, ହୋଇଲି ବଶ ମୁଂ ଆନେ କାର୍ଯ୍ୟ ନାହିଂ ।"

*(ଲଙ୍କା କାଣ୍ଡ)*

କବି ବଳରାମଙ୍କ ରାମାୟଣର ରାମଚନ୍ଦ୍ର ନିଜେ ଜଗନ୍ନାଥ । ଦୁଷ୍ଟ ଅସୁରମାନଙ୍କୁ ନିପାତ କରିବା ପାଇଁ ସେ ରାମ ରୂପ ଧାରଣ କରିଥିଲେ । ବଳଭଦ୍ର ହେଲେ ଲକ୍ଷ୍ମଣ ଆଉ ଦେବୀ ସୁଭଦ୍ରା ହେଲେ ସୀତା । ବନବାସ କାଳରେ ଯେତେବେଳେ ପୂର୍ବ ସମୁଦ୍ରରେ ସ୍ନାନ କରି ରାମ, ଲକ୍ଷ୍ମଣ, ସୀତା ନୀଳାଚଳକୁ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରିଛନ୍ତି ସେତେବେଳେ ଏହି କ୍ରମରେ ରାମ ଜଗନ୍ନାଥଙ୍କ ଆଗରେ ସୀତା ସୁଭଦ୍ରାଙ୍କ ସମ୍ମୁଖରେ ଏବଂ ଲକ୍ଷ୍ମଣ ବଳଭଦ୍ରଙ୍କ ଆଗରେ ଠିଆହୋଇ ଏକୀଭୂତ ହେବାର ବର୍ଣ୍ଣନା କରାଯାଇଛି । ନିଜେ କବି ସେଇ ରାମରୂପୀ ଜଗନ୍ନାଥଙ୍କ ଠାରେ ସମର୍ପିତ ହୋଇଛନ୍ତି । ତା'ଛଡ଼ା ତାଙ୍କର ରାମାୟଣ ବର୍ଣ୍ଣିତ ସକଳ ଚରିତ୍ର ଭଗବାନ ରାମଙ୍କ ନିକଟରେ ଶରଣାପନ୍ନ ହୋଇଛନ୍ତି । କବିଙ୍କ ମନ ଭିତରେ ସ୍ୱୀକୃତ ତତ୍ତ୍ୱ ତାଙ୍କ ପ୍ରତିଟି ଚରିତ୍ର ମଧ୍ୟକୁ ପ୍ରବେଶ କରିଛି । ରାମଙ୍କୁ ପୁତ୍ରେଷ୍ଟି ଯଜ୍ଞ କରି ଧରାଧାମକୁ ଆସିବା ପାଇଁ ଆମନ୍ତ୍ରିତ କରିଥିବା ଋଷ୍ୟଶୃଙ୍ଗଙ୍କ ଠାରୁ ଆରମ୍ଭ କରି ବଶିଷ୍ଠ, ବିଶ୍ୱାମିତ୍ର, ଜନକ, ପର୍ଶୁରାମ, ଅତ୍ରି-ଅନସୂୟା, ଅରଣ୍ୟର ଋଷିଗଣ, ଶବର, ଶବରୀ, ହନୁମାନ, ଅଙ୍ଗଦ, ସୁଗ୍ରୀବ, ବିଭୀଷଣ ତଥା ସକଳ ବାନରସେନା ପର୍ଯ୍ୟନ୍ତ ସବୁ ଚରିତ୍ର ତାଙ୍କୁ ପରମପୁରୁଷ ଭଗବାନ ବିଷ୍ଣୁଙ୍କ ଅବତାର

ଭାବରେ ସ୍ୱୀକାର କରିଛନ୍ତି । ସେହି ଅନୁସାରେ ଚରିତ୍ରମାନଙ୍କର ଅନ୍ତରର ଭକ୍ତି ନୈବେଦ୍ୟ ରାମଚନ୍ଦ୍ରରୂପୀ ଭଗବାନ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ଅର୍ପିତ ହୋଇଛି ।

ଭକ୍ତି ସାଧନାର ସାଧାରଣତଃ ଦୁଇଟି ଦିଗ । ଗୋଟିଏ ହେଲା ଉପାସନା ଓ ଅନ୍ୟଟି ବିପାସନା (ବିରୋଧ) । ବୈଷ୍ଣବ ସାଧକଗଣଙ୍କ ମତରେ ବିପାସନା ପଥରେ ମଧ୍ୟ ମୁକ୍ତିଲାଭ ହୁଏ । ଏହା ଏକ ମନସ୍ତାତ୍ତ୍ୱିକ ବ୍ୟାପାର । ମଣିଷ ଯାହାକୁ ଶ୍ରଦ୍ଧା କରେ ତା' ଅପେକ୍ଷା ଯାହାକୁ ବିରୋଧ କରେ ତା' ବିଷୟରେ ବେଶୀ ଭାବେ । ବୈଷ୍ଣବ ସାଧକମାନେ ପୁରାଣର ଦୁଷ୍ଟ ଚରିତ୍ରମାନଙ୍କଠାରେ ଭଗବତ୍ ସତ୍ତାର ସଂଯୋଗ କରି ସେମାନଙ୍କୁ ଈଶ୍ୱରଙ୍କର ଭକ୍ତରେ ପରିଣତ କରିଛନ୍ତି । ଏହି କ୍ରମରେ ରାବଣ-କୁମ୍ଭକର୍ଣ୍ଣ ହୋଇଛନ୍ତି ରାମଚନ୍ଦ୍ରଙ୍କର ବିଶିଷ୍ଟ ଭକ୍ତ । ସେମାନେ ପୂର୍ବେ ବୈକୁଣ୍ଠପୁରର ଦ୍ୱାରପାଳ ଥିଲେ । ଦେବୀ ଲକ୍ଷ୍ମୀଙ୍କ କୋପରୁ ସେମାନେ ରାକ୍ଷସ ଜନ୍ମ ପାଇଛନ୍ତି । ଶୀଘ୍ର ମୁକ୍ତି ଲାଭ ପାଇଁ ଭଗବାନ ବିଷ୍ଣୁଙ୍କୁ ବିରୋଧ କରିଛନ୍ତି । ଭଗବାନଙ୍କୁ ଶତ୍ରୁ ରୂପରେ ଜ୍ଞାନ କରିବାରୁ ଦିବା-ନିଶି କେବଳ ତାଙ୍କରି କଥା, ତାଙ୍କରି ଚିନ୍ତା ହିଁ କରିବାକୁ ହୋଇଛି । ଫଳତଃ ବିଷ୍ଣୁଙ୍କର ଭକ୍ତମାନଙ୍କ ଠାରୁ ହିଁ ଏମାନେ ବେଶୀ ସମୟ ବିଷ୍ଣୁଙ୍କୁ ଚିନ୍ତା କରିବାର ସ୍ଥିତି ପହଞ୍ଚିଛି । ଜଗମୋହନ ରାମାୟଣର ରାବଣ ଚରିତ୍ର ଠିକ୍ ଏହିପରି । ଦୁଷ୍ଟ, ପାପିଷ୍ଠ ହେଲେ ବି ସେ ଜାଣିଛି ସେ କିଏ ? ଆଉ ରାମ କିଏ ? ଯଦି ରାମ ପରମ ବିଷ୍ଣୁ ହୋଇଥାନ୍ତି ତେବେ ତ ସେ ତାକୁ ବଧ କରିବେ ଏବଂ ସେ ମୁକ୍ତ ହୋଇଯିବ । ଚତୁର୍ଭୁଜ ଧାରଣ କରି ପୁଣି ବୈକୁଣ୍ଠପୁର ଦ୍ୱାରପାଳ ହେବ । ଆଉ ଯଦି ରାମ ସାଧାରଣ ରାଜକୁମାରଟିଏ ହୋଇଥିବେ ତେବେ ତାଂକୁ ମାରିବା ପାଇଁ ରାବଣକୁ କେତେ ବା ସମୟ ଲାଗିବ ? ମନ୍ଦୋଦରୀର ଅନୁରୋଧ କ୍ରମେ ରାବଣର ଉତ୍ତର ଲକ୍ଷ୍ୟ କରିବା -

''ଦିନେକ ଦଣ୍ଡକା ଅରଣ୍ୟକୁ ଯାଇଥିଲି, ଶ୍ରୀରାମର ମୃଗୟା ବିନୋଦ ଦେଖିଲି ।
ଯେବଣ ଜୀବକଇ ବାଣେ କରଇ ନାଶ, ପାର୍ଥିବ ଦେହ ଛାଡ଼ି ହୁଅଇ ଦିବ୍ୟବେଶ ।
ସୁବର୍ଣ୍ଣ ବିବାନେ ବସି ଦେବପୁରେ ଯାଇଂ, ସୁରପୁରେ ଯାଇଂ ସକଳ ପାପ ଦହଇଂ ।
ଦେଖି ଜାଣିଲି ମୁଂ ଯେ ସେ ନାରାୟେଣ, କଇବଲ ମୁକତି ଅଟଇ ଯେହାର ବାଣ ।
ସେହିଦିନୁ ତାହାର ହାଥରେ ନୋଡ଼ଇ ମରି, ତେଣୁ ସେ ସୀତ୍ୟାକୁ ଆଣିଲି ଚୋରିକରି ।
ବାଞ୍ଛା ମୋହୋର ଗୋ ସିଦ୍ଧ ହେଲା ଏବେ, ଶ୍ରୀରାମ ନାରାଜେ ପ୍ରାଣ ହରାଇବଇଂ ଯେବେ ।
ନପୁଣ ରଘୁନାଥ ନପାରନ୍ତି ମୋତେ ମାରି, କେତେକାଳ ଥିବି ମୁଂ ଅସୁର ରୂପ ଧରି ।
ବଇକୁଣ୍ଠପୁରରେ ମୋର ନିଜ ଘର, ବନ୍ଧୁ କୁଟୁମ୍ବ ଅଛନ୍ତି ମୋର ସେହିଠାର ।
ଅନେକ କାଳ ବିଚ୍ଛେଦ କଲାକ ଧାତା, ଶ୍ରୀହରି ଘରଣୀ ଯେ ଅଟଇ ଦେବୀ ସୀତ୍ୟା ।
ତାହାକୁ ଦ୍ରୋହ କଲି ମରିବାର ପାଇଂ, ଯେ ମହୀମଣ୍ଡଳେ ସଖୀ ମୋହୋର କାର୍ଯ୍ୟ ନାହିଂ ।''

*(ଲଙ୍କା କାଣ୍ଡ)*

ରାବଣର ଏହି ସ୍ୱୀକାରୋକ୍ତିକୁ ଶୁଣି ମନ୍ଦୋଦରୀ ହାତଯୋଡ଼ି ପଚାରିଛନ୍ତି, ହେ ସ୍ୱାମୀ ! ଆପଣ ଯଦି ଏତେ କଥା ଜାଣିଛନ୍ତି ତେବେ ଦେବୀ ସୀତାଙ୍କୁ ଏତେ କଟୁକଥା କହୁଛନ୍ତି କାହିଁକି ? ରାବଣ କହିଛି – ସଖି ! ମୋର ଅନେକ ସମୟରେ ଅବିଶ୍ୱାସ ହେଉଛି । ଯଦି ସୀତା ପ୍ରକୃତରେ ମହାଲକ୍ଷ୍ମୀ ନହୋଇ ଅନ୍ୟ ଜଣେ ସାଧାରଣ ସ୍ତ୍ରୀ ହୋଇଥିବ, ତେବେ ମୋ ପ୍ରତି ଆସକ୍ତ ହେବ । ସେଥିପାଇଁ ମୁଁ ତାଂକୁ ଅନେକ କୁମାର୍ଗ କଥା କହୁଛି । ବାହାରେ ସିନା ଡରାଉଛି କିନ୍ତୁ ଭିତରେ ମୋର ଭୟ । କୁମ୍ଭକର୍ଣ୍ଣର ମୃତ୍ୟୁପରେ ମୋର ବିଶ୍ୱାସ ହୋଇଛି ଯେ ରାମ ସ୍ୱୟଂ ନାରାୟଣ । ଏହା ଅବଶ୍ୟ ମୁଂ ପୂର୍ବରୁ ଅବଗତ ହୋଇଥିଲି । ଯେଉଁ ଶିବଧନୁକୁ ଇନ୍ଦ୍ର ଛୁଇଁ ପାରେନା, ବାରବର୍ଷର ତରୁଣ ରାମ ତାକୁ ଅବଲୀଳା କ୍ରମେ ଉଠାଇ ଆମଞ୍ଚନ କଲେ ଓ ସେଥିରେ ତାହା ଭାଙ୍ଗିଗଲା । ପର୍ଶୁରାମଙ୍କୁ ଜିଣିବା କଥା ମଧ ଶୁଣିଲି । ବନବାସରେ ଆସିବା ପରେ ବଣ ଫଳମୂଳ ଖାଇ ପତ୍ରକୁଡ଼ିଆରେ ଶୋଉଥିବାର ଦେଖିଲି । ପ୍ରଭୁ ମୋ ପାଇଁ ସତେ କେତେ କଷ୍ଟ ପାଉନାହାନ୍ତି ? ଭକ୍ତକବି ବଳରାମ ରାବଣ ମୁଖରେ କହୁଛନ୍ତି –

"ବୋଇଲି ବ୍ରହ୍ମରାଶି ଅଇଲେ ମୋହୋର ନିମନ୍ତେ
ଯେତେ କଷ୍ଟ ପାଉଛନ୍ତି ପ୍ରଭୁ ଅନିମିତେ ।" *(ଲଙ୍କା କାଣ୍ଡ)*

ହନୁମାନ ବା ସୁଗ୍ରୀବ ଠାରୁ ବଳରାମଙ୍କ ରାବଣ କିଛି କମ୍ ଭକ୍ତ ନୁହେଁ । ମନ୍ଦୋଦରୀଙ୍କ ମୋହଭଙ୍ଗ କରିବାକୁ ସେ ପୁଣି ବୁଝାଇଦେଇଛି ତା'ର ପିଲାଦିନ କଥା । ଯୁବକ ବୟସରେ ବ୍ରହ୍ମାଙ୍କୁ ପାଇବା ପାଇଁ ରାବଣ କଠୋର ତପସ୍ୟା କରୁଥିଲା । ସେହି ସମୟରେ ବ୍ରହ୍ମା ନଆସିବାରୁ ସେ ଯଜ୍ଞକୁଣ୍ଡରେ ଗୋଟି ଗୋଟି କରି ତା'ର ନଅଗୋଟି ମୁଣ୍ଡ ମୋଡ଼ି ଆହୁତି ପ୍ରଦାନ କଲା । ସେଇ ସମୟରେ ମୁଣ୍ଡଗୁଡ଼ିକ ଉପର ଚମଡ଼ା ଛାଡ଼ିଯିବାରୁ ସେ ବିଧିର ଲଲାଟଲିଖନ "ଅଢ଼ାଇ ପନ୍ତି ଅକ୍ଷର" ଦେଖିବାକୁ ପାଇଲା । ପ୍ରତ୍ୟେକ ମୁଣ୍ଡରେ ଲେଖାଯାଇଥିଲା – "ଜାନକୀ ହରଣ, ରାବଣ ମରଣ ।" ପରେ ବ୍ରହ୍ମା ତା'ର ତପସ୍ୟାରେ ମୁଗ୍ଧ ହୋଇ ତାକୁ ଛପନଗଣ୍ଡା ଯୁଗର ଅମର ବର ପ୍ରଦାନ କରିଛନ୍ତି । ମୃତ୍ୟୁଭେଦ ପଚାରିବାରୁ କହିଛନ୍ତି – "ଶ୍ରୀରାମର ବାଦୀ ନୋହିବୁ କଦାଚିତେ । ନହରିବୁ ସୀତା ଜନକ ଦୋହିତେ ।"

ଏଇ ହେଉଛି ବଳରାମ ଦାସଙ୍କ ରାବଣ, ଯେ କି ଭଗବାନଙ୍କୁ ନିଜର ଶତ୍ରୁ ରୂପରେ ଚିନ୍ତାକରି ମୁକ୍ତିକାମୀ ହୋଇଥିଲା । ଭକ୍ତିଧର୍ମର ଅଭ୍ୟୁଦୟ ହେବା ପରେ ବୈଷ୍ଣବ ସନ୍ନ୍ୟାସୀ ଏବଂ ଭକ୍ତଗଣ ଅନେକ ଗ୍ରନ୍ଥ ରଚନା କଲେ । ୧୦୮ ବୈଷ୍ଣବ ଉପନିଷଦ ଲେଖାଗଲା । ସେଥିରେ ସାଧନାର ପଦ୍ଧତି, ସିଦ୍ଧିର ମାଧମ ଭାବରେ ବେଦ/ପୁରାଣ ବର୍ଣ୍ଣିତ ସମାଜ ବିରୋଧୀ ଦୁଷ୍ଟ ଚରିତ୍ରମାନଙ୍କୁ ପ୍ରଧାନ ବିଷ୍ଣୁଭକ୍ତ ରୂପେ ବର୍ଣ୍ଣନା କରାଗଲା । ଗୋପାଳ ତାପିନୀ, ପୁରୁଷୋତ୍ତମ ତାପିନୀ, ଗର୍ଗ ସଂହିତା, ରାଧା ତାପିନୀ

ଆଦି ଗ୍ରନ୍ଥ ଏହି ଶ୍ରେଣୀର । ଗର୍ଗ ସଂହିତାରେ ପୂତନା, କଂସ, ଯାମଳାର୍ଜ୍ଜୁନ, କୁବ୍‌ଜା ଆଦିଙ୍କ ପୂର୍ବଜନ୍ମ ପ୍ରସଙ୍ଗ ବର୍ଣ୍ଣିତ । ଏଥିରୁ କେତେକର ସୂଚନା ଭାଗବତ ପୁରାଣରେ ମଧ୍ୟ ପ୍ରଦତ୍ତ ହୋଇଛି ।

କବି ବଳରାମଙ୍କ ଭକ୍ତିକତାର ଅନେକ ଦୃଷ୍ଟାନ୍ତ ଜଗମୋହନ ରାମାୟଣରେ ଦେଖାଯାଏ । ବୈଷ୍ଣବ ଭକ୍ତଗଣ ସଂସାରରେ ସମସ୍ତଙ୍କୁ ବିଷ୍ଣୁଙ୍କ ଅଂଶ ଭାବରେ ଗ୍ରହଣ କରୁଥିଲେ । ତେଣୁ ସଂସାରରେ କେହି ନୀଚ ନୁହନ୍ତି । ସବୁ ଲୋକର କିଛି ନା କିଛି ମହତ୍ତ୍ୱ ଅଛି । ରାମଚନ୍ଦ୍ର ଅଯୋଧ୍ୟାକୁ ଫେରି ସେଠାରେ ନୂଆ ରାଜନବର ପ୍ରତିଷ୍ଠା କରିଛନ୍ତି । ହୋମଯଜ୍ଞାଦି କରି ତାକୁ ଶୁଦ୍ଧ କରିବା ପୂର୍ବରୁ ରାମଚନ୍ଦ୍ର ଭକ୍ତ ସୁଗ୍ରୀବ, ହନୁମାନ ଓ ବିଭୀଷଣଙ୍କୁ ପୁନରୁଦ୍ଧାର ହୋଇଥିବା ରାଜନବର ଦେଖିଆସିବାକୁ କହିଛନ୍ତି । ବଶିଷ୍ଠ ଓ ଭରତ ପାରଂପରିକ ପ୍ରଥାନୁଯାୟୀ ଏଥିରେ ବିରୋଧ କରିଛନ୍ତି ଏବଂ ବ୍ରାହ୍ମଣଙ୍କ ଦ୍ୱାରା ପ୍ରତିଷ୍ଠା ହେବା ପୂର୍ବରୁ ଏମାନେ ସେଠାକୁ ଯିବା ଅନୁଚିତ ବୋଲି କହିଛନ୍ତି । ହେଲେ ଭକ୍ତିଧର୍ମର ପ୍ରତିନିଧି ଭାବେ ରାମଚନ୍ଦ୍ର ଏ ତିନି ପରୋପକାରୀ ମହାତ୍ମାଙ୍କୁ ପରମ ପବିତ୍ର ବ୍ୟକ୍ତି ଭାବରେ ସ୍ୱୀକାର କରିଛନ୍ତି । ଭକ୍ତର ଜାତି ନାହିଁ । ଏମାନଙ୍କ ମଧ୍ୟରୁ ଜଣେ ଅସୁର ଏବଂ ଦୁଇଜଣ ବାନର । ହେଲେ ସମସ୍ତେ ଏକାନ୍ତ ପରୋପକାରୀ । ଏହି ପ୍ରସଙ୍ଗରେ କବି କହିଛନ୍ତି –

"ପରଉପକାରୀ ଏ ଅଟନ୍ତି ତିନିଜଣ, ଏମାନଙ୍କୁ ସମ ନୁହନ୍ତି ସୁରଗଣ ।
ଏ ପୁଣ୍ୟ ପ୍ରାଣୀଙ୍କର ପାଦରେଣୁ ଲାଗି, ଦୁଷ୍କୃତମାନେ ପକାଇଲେ ଭାଙ୍ଗି ।
ଅଶ୍ୱମେଧ ଯାଗ ଯେବଣ ଠାରେ କରି, ଏହାଙ୍କ ଚରଣ ପଡ଼ିବା ଠାବରୁ ନୋହେ ସରି ।"

*(ଲଙ୍କା କାଣ୍ଡ)*

ରାମ-ରାବଣ ଯୁଦ୍ଧର ପରିଣତିରେ ରାମଚନ୍ଦ୍ର ସୀତାଙ୍କୁ ଫେରିପାଇଛନ୍ତି । ଆପଣାର ପ୍ରତିଜ୍ଞା ପୂର୍ଣ୍ଣ କରିବାକୁ ବିଭୀଷଣଙ୍କୁ ଲଙ୍କାର ରାଜା କରାଇଛନ୍ତି । ସିଂହାସନାସୀନ ହେବା ପରେ ବିଭୀଷଣ ସୁବର୍ଣ୍ଣମୟୀ ଲଙ୍କାର ଶୂନ୍ୟ ରୂପ ଦେଖି ଦୁଃଖ ପ୍ରକାଶ କରିଛନ୍ତି । ରାମଚନ୍ଦ୍ର ବିଭୀଷଣଙ୍କ ମନକଥା ବୁଝିପାରି ସମସ୍ତ ମୃତବ୍ୟକ୍ତିଙ୍କୁ ବଂଚାଇ ଦେବାକୁ କହିଛନ୍ତି । କିନ୍ତୁ ବିଭୀଷଣ ଏଥିରେ ସମ୍ମତ ହୋଇନାହାନ୍ତି । ତାଙ୍କର ପରାମର୍ଶ ଅନୁସାରେ ଏହି ମହାଯୁଦ୍ଧରେ ମୃତ୍ୟୁବରଣ କରିଥିବା ସମସ୍ତ ଲୋକଙ୍କ ମଧ୍ୟରୁ କେବଳ ସନ୍ଥମାନେ ପୁନର୍ଜୀବନ ଲାଭ କରନ୍ତୁ । ଦୁଷ୍ଟମାନେ ମୃତ୍ୟୁଲୋକକୁ ଯାଆନ୍ତୁ । (ସନ୍ଥ ଜନ ଜିଅନ୍ତୁ ଦୁଷ୍ଟ ନାଶ ଯା'ନ୍ତୁ) ସଂସାରର ସର୍ବଦା ମଙ୍ଗଳ କାମନା କରୁଥିବା ଜଣେ ମହାକବି ତଥା ଭକ୍ତ ହିଁ କେବଳ ଏତିକି ଚିନ୍ତା କରିପାରେ । ଜଗତବାସୀଙ୍କ ମଙ୍ଗଳ ଲାଗି ଏହାହିଁ ଥିଲା ଇଷ୍ଟଦେବ ଜଗନ୍ନାଥଙ୍କ ନିକଟରେ କବି ବଳରାମଙ୍କ ପ୍ରାର୍ଥନା । ସମଗ୍ର ଜଗମୋହନ ରାମାୟଣ ରଚନାର ତାହାହିଁ ଥିଲା ଉଦ୍ଦେଶ୍ୟ ।

। ପାଞ୍ଚ ।

କବି ବଳରାମ ଓଡ଼ିଆ ଜନତାଙ୍କ ତୁଣ୍ଡର ଭାଷାରେ ବିରାଟ ରାମାୟଣ ଗ୍ରନ୍ଥ ରଚନା କରିବାକୁ ସାହସ ବାନ୍ଧିଥିଲେ । କବିଙ୍କ ନିକଟରେ ଆଦର୍ଶ ଥିଲା ସାରଳାଙ୍କ ଗ୍ରନ୍ଥତ୍ରୟ – 'ମହାଭାରତ', 'ବିଚିତ୍ର ରାମାୟଣ' ଓ 'ଚଣ୍ଡୀପୁରାଣ' । ସାରଳାଙ୍କ ରାମାୟଣ ଥିଲା ଖୁବ୍ ସଂକ୍ଷିପ୍ତ – ରାମାୟଣର କେବଳ 'ଉତ୍ତରାକାଣ୍ଡ' କହିଲେ ଅତ୍ୟୁକ୍ତି ହେବ ନାହିଁ । ବଳରାମଙ୍କ ରାମାୟଣ କିନ୍ତୁ ସଂପୂର୍ଣ୍ଣ ବାଲ୍ମୀକି ରାମାୟଣର ବିସ୍ତାରିତ ରୂପ । ଭାଷା ଥିଲା ଲୋକଭାଷା । ସେସମୟର ଲୋକକଥିତ ଭାଷାକୁ ନେଇ କବି ସୁନ୍ଦର କାବ୍ୟଭାଷାରେ ପରିଣତ କରିଥିଲେ । ଗାଁରେ, ସହରରେ, ସେନାବାହିନୀରେ ସାଧାରଣ କୃଷକ, ବ୍ୟବସାୟୀ, ବୃତ୍ତିଜୀବୀମାନେ କଥା ହେଉଥିବା କଞ୍ଚାଭାଷାକୁ ସଂଯୋଜିତ କରି ବଳରାମ ଆପଣାର ଦିବ୍ୟ ପ୍ରତିଭା ବଳରେ ମହାଗ୍ରନ୍ଥ ରାମାୟଣ ରଚନା କରିଛନ୍ତି । ଅନ୍ଧୁଆଁ ଗ୍ରାମ୍ୟ ଭାଷାର ଯେ ଏତେ ସାମର୍ଥ୍ୟ ତାହା ବଳରାମଙ୍କ କାବ୍ୟକୁ ଆମୂଳାନ୍ତ ପାଠ ନକଲେ ବୁଝିହେବ ନାହିଁ । ସାଧାରଣତଃ ଦେଖାଯାଏ କଥିତ ଭାଷା ଓ ଲିଖିତ ଭାଷା ଭିନ୍ନ । କିନ୍ତୁ ବଳରାମଙ୍କର ବିଶେଷତ୍ୱ ହେଲା ସେ କଥିତ ଭାଷାକୁ ହିଁ ଲିଖିତ ଭାଷାରେ ରୂପାନ୍ତରିତ କରିଅଛନ୍ତି । ଗ୍ରାମ୍ୟଭାଷାର ଏଇ କାବ୍ୟିକ ବ୍ୟବହାର ଦେଖିଲେ ବଳରାମଙ୍କ ପ୍ରତିଭା ନିକଟରେ ସ୍ୱତଃ ମୁଣ୍ଡ ନଇଁଯାଏ । ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦିଆଯାଇପାରେ । ରାମରାବଣ ଯୁଦ୍ଧ ସମୟର ଦୃଶ୍ୟ ବର୍ଣ୍ଣନା କରି କବି ଲେଖିଛନ୍ତି –

"ଘୋଡ଼ା କାମୋଡ଼ିଲା କେବଣ ବାପୁଡ଼ାକୁ, ହାବୋଡ଼ାର ଘାଏ ଭାଜିଲା କାହାର ବୁକୁ ।
କେ ଲେଡ଼ା ଖାଇଣ ନ ପାରନ୍ତି ଉଠି, ଗୋଇଠାର ଘାଏ କାହାର ଭାଜିଗଲା ପାଟି ।
କାହାକୁ ଅଖଡ଼ରେ ରଥୀ ମାଉଂସ ଚିରିଲା, ରକତ ଉଦ୍‌ଗାରି ମୋହେ କେ ପଡ଼ିଲା ।
ଗହଳେ କାହାକୁ କାଟିଗଲା ପର୍ଶୁ, କେ ଝୁଣ୍ଟିପଡ଼ିଲା ଗୋଡ଼ରେ ରକତ ଦିଶୁ ।
କେବଣ କପିକି ଧରିଣ ନିଅନ୍ତି, କେ ହେତୁ ପାଇ ବହନ ପଳାନ୍ତି ।
କେହୁ ରହ ରହ ବୋଲନ୍ତି ଉଠିକରି, କେ ଚିରାମାରିଣ ଉଠି ଝଲକାନ୍ତି ଫରୀ ।
କେ କାଣ୍ଡ ପୂରାଇ ଭଡ଼ା ମାରିଯାନ୍ତି, ବାଜିଲାରେ ବୋଲି ନାରାଚ ଛାଡ଼ନ୍ତି ।
କେ ଧରନ୍ତି କେ ଛାଳନ୍ତି ବକଘଜ, ଉପରେ ଥିଲା ଲୋକର କେ ଧରି ଝୁଙ୍କଇ ବାଳ ।
କେ କାହାକୁ ଆଣ୍ଠୁଆ ମାରନ୍ତି ପେଲିଦେଇଂ, କେ ଡାକେ ସମ୍ଭାଳ ବୋଲି ରଡ଼ି ଦେଇଂ ।"

ଯୁଦ୍ଧ ବର୍ଣ୍ଣନାରେ ଗ୍ରାମ୍ୟଶବ୍ଦର ବ୍ୟବହାର ପରି ରୂପ ବର୍ଣ୍ଣନାରେ ମଧ କବି ସୁନ୍ଦର ଗାଉଁଲି ଲୋକଭାଷାର ବ୍ୟବହାର କରିଛନ୍ତି । ଏହାକୁ ପାଠ କଲେ ମନେହୁଏ ଯେପରି ଦକ୍ଷ ମାଳାକାରର କରସ୍ପର୍ଶ ଲାଗି ବନ୍ୟ ପୋକଶୁଙ୍ଘା ଫୁଲରେ ବି ଅତି ସୁନ୍ଦର ମାଳା ତିଆରି ହୋଇପାରିଛି । ବିରହୀ ରାମଚନ୍ଦ୍ର ହନୁମାନ ଠାରୁ ସୀତା ଠାବ ବିଷୟରେ

ସବୁକଥା ଶୁଣି ହନୁକୁ ବିଦାୟ ଦେଇଛନ୍ତି । ସୀତାଙ୍କର ସୁନ୍ଦର ରୂପରାଶି ତାଙ୍କ ଆଖି ଆଗରେ ଭାସିଉଠିଛି । ସୀତାଙ୍କ ରୂପଚିନ୍ତା ରାମଙ୍କ ମନ ଭିତରେ ଦେଖନ୍ତୁ –

"ମୁଖ ଦଧିଭାଣ୍ଡ ଯେ ନୟନ ଦୁଇମାଛ, ବୃତପତ୍ର କେଶ ଅଟଇ ପ୍ରତକ୍ଷ ।
ନାସା ନଟିକାଳ ତଣ୍ଡୁଳ ଦନ୍ତମାନ, କୁଚ ଦୁଇ ପୂର୍ଣ୍ଣକୁମ୍ଭର ବିଧାନ ।
କର ଚରଣ କଦଳୀ ଗଛ ଚାରି, ରାଜହଂସ ପକ୍ଷୀ ଚାଲି ସମ ସରି ।
କର୍ଣ୍ଣର ତଡ଼କୀ ପାରୁଆ ଦୁଇ ଶ୍ୱେତ, ପିନ୍ଧିଲାର ବାସ ଅଟଇ ନାଲି ନେତ ।
ଶ୍ୟରୀର କାନ୍ତି ମଙ୍ଗଳ ଦୀପ ଜଳେ, ଅଳକା ପଟାନ୍ତର ଦ୍ରୋଣା ମାଳେ ମାଳେ ।
ମଙ୍ଗଳା ଅଷ୍ଟକ ଅଟଇ ତାର ବାଣୀ, ଉଠିଲେ ରାମ ଶୁଭ ଅନକୂଳ ଜାଣି ।"

*(ସୁନ୍ଦରା କାଣ୍ଡ)*

ଲୋକଭାଷା ବ୍ୟବହାରର ଆଉ ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ ଦେଖିବାକୁ ମିଳେ ଲଙ୍କାରେ ହନୁମାନକୁ ବାନ୍ଧିକରି ନେବା ସମୟରେ । ଅସୁର, ଅସୁରୁଣୀଗଣ ଏଇ ପୋଡ଼ାମୁହାଁ ମାଙ୍କଡ଼କୁ ଖୁବ୍ ଗାଳି ଦେଇଛନ୍ତି । ମାଡ଼ ମାରିଛନ୍ତି । ଗାଁଗଣ୍ଡାରେ କେହି ଚୋରି କରି ଧରାପଡ଼ିଲେ ତାକୁ ଗାଁର ସ୍ତ୍ରୀ-ପୁରୁଷମାନେ ଯେପରି ଘେରି ଗାଳିମାଡ଼ ଦିଅନ୍ତି ଠିକ୍ ସେଇପରି ବର୍ଣ୍ଣନା ବଳରାମ ପ୍ରଦାନ କରି ଲେଖିଛନ୍ତି –

"ବିଧା ଗୁରୁଦା କେ ମାରନ୍ତି ନେଇ ନାତ, କେହୁ ମାରନ୍ତି ନେଇ ତୀକ୍ଷ ଖଡ଼ଗ ଘାତ ।
ସପତପୁର ଲଙ୍କ ବେଢ଼ାଇ ବୁଲାନ୍ତି, କୋନ୍ଦି ବିକୋନ୍ଦିରେ ବୁଲାଇ ଦେଖାନ୍ତି ।
ମାଇପେ ପିଟନ୍ତି ଘେନିଣ ପାହୁରାଣି, ପାଉଂଶ ପକାବନ୍ତି କେବଣ ତରୁଣୀ ।
କେହୁ ନେଇ ପାଣି ପକାଇ ଗାଳିଦ୍ୟନ୍ତି, କେବଣ ଯୁବତୀ ନେଇ ଖୁନ୍ଦାଏ ମାରନ୍ତି ।
କେହୁ ଫୋପଡ଼ାଇ ମାରନ୍ତି ଗୋଇଠା, କେ ପଥର ଫିଙ୍ଗନ୍ତି କେ ମାରୁଛନ୍ତି ଇଟା ।"

*(ସୁନ୍ଦରା କାଣ୍ଡ)*

ସାଧାରଣ ଲୋକଭାଷାକୁ ବଳରାମ କାବ୍ୟଭାଷାରେ ପରିଣତ କରିବାର ଏହିଭଳି ଶତାଧିକ ଦୃଷ୍ଟାନ୍ତ ଜଗମୋହନ ରାମାୟଣରେ ଦେଖିବାକୁ ମିଳେ । ପୁରାଣ ପ୍ରସଙ୍ଗର ପୁନର୍ଲିଖନ, ଉପମା ପ୍ରୟୋଗ, ଲୋକ କଥିତ ଦେଶଜ ଶବ୍ଦମାନଙ୍କୁ ତତ୍ସମ ଓ ତଦ୍ଭବ ଶବ୍ଦ ସହିତ ତିଳ ତଣ୍ଡୁଳିତ କରି ପ୍ରୟୋଗ କରିବା, ସର୍ବୋପରି ନାଟକୀୟ ଉପସ୍ଥାପନା ମାଧ୍ୟମରେ ପାଠକକୁ ଆକୃଷ୍ଟ କରିବାର ଯେଉଁ କଳା ବଳରାମଙ୍କ ଜଗମୋହନ ରାମାୟଣରେ ଦେଖାଯାଏ, ତାହା ପରବର୍ତ୍ତୀ ରୀତି ଓ ଗୀତି ଯୁଗର ସାହିତ୍ୟ ସ୍ରଷ୍ଟାମାନଙ୍କୁ ମଧ୍ୟ ବିଶେଷ ପ୍ରଭାବିତ କରିପାରିଥିବା ଉଲ୍ଲେଖଯୋଗ୍ୟ ।

। ଛଅ ।

ରାମାୟଣ ସମଗ୍ର ଭାରତୀୟ ସଂସ୍କୃତିର ଆଧାରଶିଳା । ଏହାର ସାମାଜିକ ଆଦର୍ଶ କେଉଁ ସୁପ୍ରାଚୀନ କାଳରୁ ଆଜିସୁଦ୍ଧା ଭାରତୀୟ ସମାଜ ଓ ଜୀବନକୁ ନିୟନ୍ତ୍ରିତ କରିଆସୁଛି । ଭାରତୀୟ ଆର୍ଯ୍ୟସଂସ୍କୃତିର ବୈଦିକ ବିଚାରଧାରା ଯେତେବେଳେ ନାନା କୁସଂସ୍କାର ସଂସ୍ପର୍ଶରେ ଆସି କଳୁଷିତ ହେବାକୁ ଲାଗିଲା, ସେତେବେଳେ ମହର୍ଷି ବାଲ୍ମୀକି ବୈଦିକ ଆଦର୍ଶକୁ ସହଜ/ସରଳ କଥାବସ୍ତୁ ଆଧାରରେ 'ରାମାୟଣ'ର ରୂପ ପ୍ରଦାନ କଲେ । ଭାରତୀୟ ଜୀବନବୋଧ ଏକ ନୂତନ ମହିମା ମଣ୍ଡିତ ଆଦର୍ଶ ଉପରେ ପ୍ରତିଷ୍ଠିତ ହେଲା । ବୈଦିକ ଆର୍ଷଭାବନାର ଦୁର୍ଭେଦ୍ୟ ବ୍ରହ୍ମସାଧନା ସାକାର ରୂପ ଧାରଣ କରି ଆଦର୍ଶ ରାଜା, ପୁତ୍ର, ପତି, ଭ୍ରାତା ଭାବରେ ଭାରତୀୟ ଜୀବନକୁ ନିୟନ୍ତ୍ରଣ କରିବାକୁ ଲାଗିଲା । ରାମାୟଣର ପାରିବାରିକ ସଂପ୍ରୀତି, ସତ୍ୟ ପାଳନ ନିଷ୍ଠା, ପତ୍ନୀ ଓ ଭ୍ରାତୃପ୍ରେମ, ପ୍ରଜାପ୍ରେମର ଆଦର୍ଶ ଆଜି ମଧ ଆମ ସମାଜରେ ଦୃଷ୍ଟାନ୍ତଯୋଗ୍ୟ ହୋଇ ରହିପାରିଛି । ବୈଜ୍ଞାନିକ ଆବିଷ୍କାର ଉଦ୍ଭାବନ ଓ ଆଧୁନିକ ମଣିଷର ସର୍ବଗ୍ରାସୀ ଲୋଭ ଯେପରି ଆମ ପ୍ରକୃତିକୁ ନଷ୍ଟ କରି ଚାଲିଛି, ସେତେବେଳେ ରାମାୟଣରେ ରାମଚନ୍ଦ୍ର ଓ ଦେବୀ ସୀତାଙ୍କର ପ୍ରକୃତି ପ୍ରତି ଅନାବିଳ ଶ୍ରଦ୍ଧା ଏବେବି ପ୍ରତ୍ୟେକ ସଚେତନ ଭାରତୀୟ ମଣିଷକୁ ପ୍ରକୃତି ପ୍ରତି ଆଗ୍ରହୀ କରାଇଥାଏ । ଖାଲି ସେତିକି ନୁହେଁ, ମଣିଷ ଯେତେ ଶାନ୍ତିକାମୀ ହେଲେ ବି କେହି ଦୁଷ୍ଟ ପ୍ରକୃତିର ବ୍ୟକ୍ତି ଯେତେବେଳେ ସାମାଜିକ ସନ୍ତୁଳନକୁ ବିରୋଧ କରେ ସେତେବେଳେ ସେହି ଅପଶକ୍ତିର ବିନାଶ କରି ଆଦର୍ଶର ପୁନଃ ପ୍ରତିଷ୍ଠା ଲାଗି ଶାନ୍ତ ଅଥଚ ଶୂର-ବୀର ବ୍ୟକ୍ତିଟିକୁ ଅସ୍ତ୍ର ଧାରଣ କରିବାକୁ ପଡ଼ିଥାଏ । ରାମାୟଣରେ ରାମଚନ୍ଦ୍ରଙ୍କ ବାଳୀ ବଧ, ରାବଣ/କୁମ୍ଭକର୍ଣ୍ଣ ଆଦି ଅସୁରଙ୍କ ବଧ ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ସାମାଜିକ ଆଦର୍ଶ ପ୍ରତିଷ୍ଠା ଲାଗି ଶ୍ରୀରାମଙ୍କ ଘରବାହୁଡ଼ା ମଧ ଅନ୍ୟ ଏକ ଉଦାହରଣ । କେଉଁ ପ୍ରାଚୀନକାଳରୁ ଭାରତୀୟମାନଙ୍କୁ ରାମଙ୍କ ଅଯୋଧ୍ୟା ପ୍ରତ୍ୟାଗମନ ଜନ୍ମଭୂମି ଓ ଜନନୀ ପ୍ରତି ଅହେତୁକ ଶ୍ରଦ୍ଧା ସୃଷ୍ଟି କରିଆସିଛି । ଲଙ୍କା ସ୍ୱର୍ଣ୍ଣମୟୀ ହୋଇପାରେ, କିନ୍ତୁ ଜନ୍ମଭୂମି ଠାରୁ ତାହା କୌଣସି ଗୁଣରେ ଶ୍ରେଷ୍ଠ ନୁହେଁ । ରାମଚନ୍ଦ୍ର ରାମାୟଣରେ ଦେବତା ହେଲେ ବି ମନୁଷ୍ୟ ରୂପରେ ଚିତ୍ରିତ ହୋଇଛନ୍ତି । ଉତ୍ତରାକାଣ୍ଡରେ ବର୍ଣ୍ଣିତ ଲକ୍ଷ୍ମଣ ଓ ସୀତା ବିସର୍ଜନଜନିତ ଶ୍ରୀରାମଙ୍କ ଆଧ୍ୟାତ୍ମିକ ଦ୍ୱନ୍ଦ୍ୱ ଏହାର ପ୍ରମାଣ ଦେଇଥାଏ । ଭଗବାନ ହେଲେ ବି ମର୍ତ୍ତ୍ୟମଣ୍ଡଳେ ଜନ୍ମ ହୋଇଥିବା ମନୁଷ୍ୟ ନିୟତି ହାତର କ୍ରୀଡ଼ନକଟିଏ । ପ୍ରତିଟି ମଣିଷକୁ ତାହା ସ୍ୱୀକାର କରିବାକୁ ପଡ଼ିବ । ସୀତା ଶେଷରେ ରାମଙ୍କ ଠାରୁ ବିଦାୟ ନେଇଛନ୍ତି । ଲକ୍ଷ୍ମଣଙ୍କୁ ମଧ ତାଙ୍କୁ ତ୍ୟାଗ କରିବାକୁ ପଡ଼ିଛି । ଏହାତ ଜୀବନର ଅନ୍ତିମ ସତ୍ୟ । ତା'ପରେ ଯାଇ ଶେଷଯାତ୍ରା । ଏହାହିଁ ଭାରତୀୟ ସଂସ୍କୃତିକୁ ରାମାୟଣର

ଦାନ । ସେଥିପାଇଁ ଅନେକ ବିଦେଶୀ ସଂସ୍କୃତିର ପ୍ରଭାବ ସତ୍ତ୍ୱେ ବି ଭାରତୀୟ ସମାଜ ଓ ଜୀବନରେ ଆଦର୍ଶ ପ୍ରତି ନିଷ୍ଠା ଓ ପାରିବାରିକ ମୂଲ୍ୟବୋଧ ତିଷ୍ଠି ରହିଛି ।

ଓଡ଼ିଆ ସାହିତ୍ୟର ପରଂପରାରେ 'ଜଗମୋହନ ରାମାୟଣ' ଏକ ସଫଳ ସୃଷ୍ଟି । ମହର୍ଷି ବାଲ୍ମୀକିଙ୍କ କଥାବସ୍ତୁକୁ ଆଧାର କରି ମହାକବି ବଳରାମ ଓଡ଼ିଆ ପାଠକମାନଙ୍କ ପାଇଁ ପ୍ରସ୍ତୁତ କରିଥିଲେ ତାଙ୍କ ରାମାୟଣ । ଏଥିରେ ପ୍ରତିଟି ଚରିତ୍ର ଓ ଘଟଣାକୁ ସେ ଓଡ଼ିଶାର ନିଜସ୍ୱ ବିଚାରରୁ ବର୍ଣ୍ଣନା କରିଅଛନ୍ତି । ଓଡ଼ିଶାର ନଦ-ନଦୀ, ବନ-ପର୍ବତ-ସମୁଦ୍ର ଏଥିରେ ସୁନ୍ଦର ଭାବରେ ଚିତ୍ରିତ ହୋଇଛନ୍ତି । ବଳରାମଙ୍କ ଦିବ୍ୟ କବିତ୍ୱ ଏପରି ସୁନ୍ଦର ରୂପେ ଗ୍ରାମ୍ୟ/ଲୋକକଥିତ ଭାଷାକୁ କାବ୍ୟଭାଷାର ରୂପ ପ୍ରଦାନ କରିଅଛି ଯେ ଏହାକୁ ପାଠକଲାବେଳେ ପାଠକ କବିଙ୍କ ସ୍ରଷ୍ଟାପଣର ନୈସର୍ଗିକ ସୁଷମାରେ ଉଦ୍‌ବେଳିତ ହେବାକୁ ବାଧ ହୋଇଥାଏ । ଏଥିପାଇଁ କବି ବଳରାମଙ୍କ ପରବର୍ତ୍ତୀ ଯୁଗର କବିମାନଙ୍କ ଉପରେ ଏହାର ପ୍ରଭାବ ଅସାମାନ୍ୟ । ଅର୍ଜ୍ଜୁନ ଦାସଙ୍କ 'ରାମବିଭା' ଠାରୁ ଆରମ୍ଭ କରି ଧନଞ୍ଜୟଙ୍କ 'ରଘୁନାଥବିଳାସ', ଉପେନ୍ଦ୍ରଙ୍କ 'ବୈଦେହୀଶବିଳାସ', ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ', କେଶବ ପଟ୍ଟନାୟକଙ୍କ 'ନୃତ୍ୟ ରାମାୟଣ' ତଥା କେଶବ ତ୍ରିପାଠୀଙ୍କ 'ପୂର୍ଣ୍ଣ ରାମାୟଣ' ଆଦିରେ ବଳରାମଙ୍କ ସ୍ପଷ୍ଟ ପ୍ରଭାବ ପରିଲକ୍ଷିତ ହୋଇଥାଏ । ବିଶିଷ୍ଟ କଥାଶିଳ୍ପୀ ସାରଳାଙ୍କ ପରେ ପରେ ରାମକଥାକୁ ନିଗୁଢ଼ା କବିତ୍ୱରେ ରସାଣିତ କରି ବର୍ଣ୍ଣନା କରିବାର ଯେଉଁ ପରଂପରା ବଳରାମ ଆରମ୍ଭ କରିଥିଲେ, ତାହାହିଁ ଓଡ଼ିଆ ସାହିତ୍ୟକୁ ସମଗ୍ର ପୂର୍ବ ଭାରତୀୟ ସାହିତ୍ୟ ମଧ୍ୟରେ ଶ୍ରେଷ୍ଠ କରି ଗଢ଼ିବାର ସାମର୍ଥ୍ୟ ଆଣିଦେଇଥିଲା । ଏହିସବୁ ଦୃଷ୍ଟିରୁ ବିଚାରକରି ଦେଖିଲେ ଜଣାଯାଏ 'ଜଗମୋହନ ରାମାୟଣ' ଓଡ଼ିଆ ସାହିତ୍ୟର ଏକ କ୍ଲାସିକ୍ ସୃଷ୍ଟି ।

ଏହିଭଳି ଏକ ମହାଗ୍ରନ୍ଥରୁ କେତେକାଂଶକୁ ସଂକଳିତ କରି କବି ବଳରାମଙ୍କ ଶ୍ରେଷ୍ଠକୃତି ଭାବରେ ଏକ ସଂକଳନ ପ୍ରକାଶ କରିବାକୁ ମୋତେ ଦାୟିତ୍ୱ ଦେଇଥିବାରୁ ମୁଁ ଏନ୍‌ବିଟି କର୍ତ୍ତୃପକ୍ଷ ଓ ତା'ର ଓଡ଼ିଆ ବିଭାଗର ସଂପାଦକ ଡ. ପ୍ରମୋଦ ସରଙ୍କୁ ଏ ଅବସରରେ ସାଧୁବାଦ ଜଣାଉଛି । ଖାଲି ସଂପାଦକ ଭାବରେ ନୁହେଁ ବହିଟିକୁ ଟିକିନିଖି ଦେଖି ତାକୁ ସର୍ବାଙ୍ଗ ସୁନ୍ଦର କରିବାରେ ପ୍ରମୋଦବାବୁ ଯେ ପରିଶ୍ରମ କରିଛନ୍ତି ତାହା ମୋ ପାଇଁ ଚିରସ୍ମରଣୀୟ ହୋଇ ରହିବ । ଏଥିପାଇଁ ମୁଁ ଡ. ସରଙ୍କ ନିକଟରେ ବିଶେଷ କୃତଜ୍ଞ । ଏତଦ୍‌ବ୍ୟତୀତ ଏହି ପୁସ୍ତକର ସଂପାଦନା ଲାଗି ମୁଁ ମୋର ପୂଜ୍ୟଗୁରୁ ପ୍ରଫେସର କୃଷ୍ଣଚରଣ ସାହୁଙ୍କ ସଂପାଦିତ ତଥା ତାଙ୍କର ବନ୍ଧୁ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ପୁନଃସଂପାଦିତ ପୁସ୍ତକଦ୍ୱୟର ବିଶେଷ ସହାୟତା ନେଇଛି । ସେଥିପାଇଁ ପ୍ରକାଶନ ଅବକାଶରେ ଏଇ ଦୁଇ ସ୍ୱର୍ଗତ ପୁଣ୍ୟାତ୍ମାଙ୍କ ଉଦ୍ଦେଶ୍ୟରେ ମୋର ଭକ୍ତିପୂତ ପ୍ରଣାମ ଜଣାଉଛି । ସଂପାଦନା କାର୍ଯ୍ୟରେ ମୋତେ ଉତ୍ସାହିତ କରିଥିବାରୁ ବନ୍ଧୁ ଡ. ବିଜୟାନନ୍ଦ

ସିଂହ ଓ ଅଗ୍ରଜ ପ୍ରଫେସର ଦେବେନ୍ଦ୍ର କୁମାର ଦାଶଙ୍କ ନିକଟରେ ମୁଁ ବିଶେଷ କୃତଜ୍ଞ । ସର୍ବୋପରି ପାଠକଗଣ ପୁସ୍ତକଟିକୁ ପାଠକରି ବଳରାମଙ୍କ ମହାପ୍ରତିଭାର ପରିଚୟ ପାଇଲେ ଓ ସମ୍ପୂର୍ଣ୍ଣ ରାମାୟଣଟିକୁ ପଢ଼ିବାର ଶ୍ରଦ୍ଧା କରିପାରିଲେ ଆମର ଶ୍ରମ ସାର୍ଥକ ହେବ ।

– ପ୍ରଦୀପ୍ତ କୁମାର ପଣ୍ଡା



# ଜଗନ୍ନାଥଙ୍କ ବନ୍ଦନା

ବନ୍ଦଇ ଜଗନ୍ନାଥ କମଳାଦେବୀ ପତି
ନୀଳଗିରି ଶିଖରେ ଅପୂର୍ବ ମୂରତି ।
ସୁନ୍ଦର ଶ୍ରୀମୁଖ ନୀଳମଣି ଆଭା
କି ଜାଣି ପଟାନ୍ତର କଳାମେଘ ପ୍ରଭା ।
ନୟନ ଯୁଗଳ କି ଶରଦର ଶଶୀ
ଜଗତଜନ ହୃଦେ ଅଛୁ ପ୍ରଭୁ ବସି ।
ସର୍ବଦେବ ନିସ୍ତାରଣ ସୁରଗଣ ସାହା
ସୁବର୍ଣ୍ଣର ଶଙ୍ଖଚକ୍ର ଶୋଭେ ବେନି ବାହା ।
ସର୍ବାଙ୍ଗେ ଚନ୍ଦନ ଲେପନ ମୁରାରି
ବିଚିତ୍ର ଝିନବାସ ପରିହରଣ କରି ।
ଅତିଅନ୍ତ ଶୋଭିତ ପବିତ୍ର ନେତ୍ର ଗୋଟା
ଶ୍ରୀହରି ଅଙ୍ଗେଣ କାଛେଣି ଚାରୁଛଟା ।
ଶିରରେ ମୁକୁଟ କୁଣ୍ଡଳ ଶୋଭାବନ
ବିରାଜନ୍ତି ମଣି କିରଣ ଛନଛନ ।
ଲଲାଟେ ଶୋହଇ ନବରତ୍ନ ଚିତା
ଗଗନ ମଣ୍ଡଳେ କି ଶୋହଇ ସବିତା ।
ଅକାଳ ଲମ୍ବିତ ଯେ ମୁକୁତାର ଝରା
ଚନ୍ଦ୍ର ସନ୍ନିଧେ ଯେହ୍ନେ ଉଦୟେ ଲକ୍ଷେ
ତାରା ।
ଗଣ୍ଡସ୍ଥଳେ ମଣ୍ଡିତ ସୁସଞ୍ଚ ଚାରୁଚିତା
ହୃଦରେ ପଦେକ ଉରେ ସୁବର୍ଣ୍ଣ ପଇତା ।
ସୁରଙ୍ଗ ଅଧର ସୁଦୀର୍ଘ ସଞ୍ଚ ରେଖା
ଜଳଧର କୋଳେ କି ବିଜୁଳିର ଶିଖା ।
ସୁସଞ୍ଚ ନାସିକାକୁ ପଟାନ୍ତର ନାହିଁ କିଛି
ଆପଣେ ଆପଣାକୁ ଘଟଇ ଶ୍ରୀବସି ।
ତଇଲୋକ ବଶ ହୁଅଇ ଯାହାକୁ ଚାହିଁ
ଯେ ସେ ଜଗନ୍ନାଥ ଯେ ଜଗମୋହନ
ଗୋସାଇଁ ।
କଟିରେ କଟିମେଖଳା ଶୋଭିତ ଦିବ୍ୟ କାନ୍ତି
ବାମେ ଯମଦାଢ଼ ପ୍ରଚଣ୍ଡ ସୂର୍ଯ୍ୟ ଜ୍ୟୋତି ।
ରତ୍ନ ଚକାଯେଣ ନେତର ଦୁଳି ପାଡ଼ି
ବିଜୟେ ଜଗନ୍ନାଥ ବଡ଼ିମା ପଣ ଛାଡ଼ି ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚିନ୍ତନ୍ତି ଯାକୁ ଧ୍ୟାନେ
ସେ ପ୍ରଭୁ ଅବତାର ମଞ୍ଚେଣ ଆପଣେ ।
ଦେଖିତେ ସୁଲଭ ନୟନେ ଅଗୋଚର
ପରଂବ୍ରହ୍ମ ରୂପ ଦିଶନ୍ତି ଶୋଭାକର ।
ଅବୟେ ଅଶେଷ ଅରୂପ ରୂପକାୟା
ଅବର୍ଣ୍ଣ ଅଜାତ ଅବିବେକ ମାୟା ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଯେକଇ ଈଶ୍ୱର
ସାକ୍ଷାତେ ବିଜୟେ ଦକ୍ଷିଣ ସିନ୍ଧୁ ତୀର ।
ଦଣ୍ଡ ସିଂହାସନ ଚାମର ଶ୍ୱେତଛତ୍ର
ରାଜ ରାଜେଶ୍ୱର ନୃପତି ପବିତ୍ର ।
ପାଟ ମହାଦେଈ ରୁକ୍ମିଣୀ ସତ୍ୟଭାମା
ମନ୍ତ୍ରୀଗଣ ସହିତରେ ଜ୍ୟେଷ୍ଠ ବଳରାମା ।
ଭଗ୍ନୀ ସୋଭଦ୍ରା ସେ ସମ୍ଭାଳଇ ଅର୍ଥ
ଭଣ୍ଡାରେ ପରିପୂର୍ଣ୍ଣ ବିବିଧ ପଦାର୍ଥ ।
ବଜ୍ର ସମ ପ୍ରାସାଦ ପାଷାଣ ନବର
ଧ୍ୱଜେ ଚକ୍ର ଚିହ୍ନ ଚିରାଳ ଫରହର ।
ଆଗେ ଦ୍ୱାରପାଳ ବିନତାର ବଚ୍ଛ
ଦକ୍ଷିଣ ପାରୁଶେଣ କଳ୍ପବଟ ବୃକ୍ଷ ।

ଲବଣ ମାହାଜଳ ଗଡ଼କଇ ଖଣା
ଲାଭକେଶ୍ୱର ଲିଙ୍ଗ ପଶ୍ଚିମ କଣେ ଠଣା ।
ପାଟଣାର ନାମ ଶ୍ରୀପୁରୁଷୋତ୍ତମ ପୁରୀ
ବ୍ରହ୍ମା ସ୍ରିଜିଲା ତାହା ଶଙ୍ଖ ମତି କରି ।
ମାରକଣ୍ଡେଶ୍ୱର ଲିଙ୍ଗ ନଗ୍ରକୁ ଦଣ୍ଡପାଟ
ଚାରିଦ୍ୱାରେ ବସଇ ମୁକତି ଚାରିହାଟ ।
ସୁବର୍ଣ୍ଣମୟେ ପୁର ଦିଶଇ ଅତି ଶୋଭା
ଯହିଁ ନଭେଦଇ କଳିକାଳ ପ୍ରଭା ।
ଦଶ ସହସ୍ର ଘର ଅଷ୍ଟାଦଶ ଜାତି
ସବିହେଁ ଚତୁର୍ଭୁଜ ସ୍ୱର୍ଗକଇ ଦିଶନ୍ତି ।
ଭାଳିଣ ଦେବତା ଏ ପୁଛନ୍ତି ପିତାମହ
ଏଥିରେ ସଂଶୟ ଦେବ ବିଚାରିଣ କହ ।
ମର୍ତ୍ତ୍ୟଲୋକେ ଭ୍ରଥ ଖଣ୍ଡେ ପୂର୍ବଦିଗ ଶେଷ
ଦକ୍ଷିଣ ମଉଦଧି ଉତ୍ତର ତଟ ଦେଶ ।
ନୀଳଗିରି ପର୍ବତେ ବିଜୟେ ଚକ୍ରଧାରୀ
ଚର୍ମ ନୟନରେ ଦେଖିଣ ଲୋକେ ତରି ।
ନଗ୍ରହିଁ ସୁସଞ୍ଚ ବହୁତ ଲୋକ ଅଛି
ସଭିଏଁ ଦିଶନ୍ତି ପ୍ରତକ୍ଷେ ଶ୍ରୀବଛି ।
ଶଙ୍ଖ ଚକ୍ର ଗଦା ସାରଙ୍ଗ ଚତୁର୍ଭୁଜ
କିରୀଟ କୁଣ୍ଡଳ ପୀତବାସ ଦିବ୍ୟ ତେଜ ।
ଏଥିରେ ମଧ କେ ଅଟଇ ଜଗନ୍ନାଥ
କେମନ୍ତେ ଜାଣିବା ଏହା କହସି ଜଗତର
ତାତ ।
ହସିଣ ବ୍ରହ୍ମା ବୋଲନ୍ତି ସମସ୍ତ ଦେବ ଶୁଣ
ପୁରୁଷୋତ୍ତମ ଲୋକେ ସମସ୍ତେ
ନାରାୟେଣ ।
ଏ ସେ ନିଦାବିଷ୍ଣୁ ପରମ ବ୍ରହ୍ମ ହରି
ଚର୍ମ ଲୋଚନେ ଦେଖିଲେ ଯାହା ତରି ।
ସର୍ବଲୋକେ ଯହୁଁ ହୋଇଲେ ଚତୁର୍ଭୁଜ
ଆପଣାର କର ଛାଡ଼ିଲେ ଦେବରାଜ ।
ଚରଣ ନଘେନିଲେ ଦେବଗଣ ହିତେ
ଗୁପତ କଲେ ହରି ଶ୍ରବଣ ସହିତେ ।
ଆଜ୍ଞୁଂ ହେତୁ କରିଥିବ ଯେହା ଚିହ୍ନି
ଆନନ୍ଦ ହୋଇଲେ ଶୁଣି ସୁରସିଦ୍ଧ ମୁନି ।
ବ୍ରହ୍ମା ସହିତେଣ ଅଇଲେ ଦେବେ ଦେଖି
ସୁଫଳ ହୋଇଲେ ସେ ଗୋବିନ୍ଦଙ୍କୁ
ନିରେଖି ।
ଦୁଇବାହୁ ଟେକିଣ ଯାଚନ୍ତି ଶରଣ
ଯେବଣ ନାମ ଗୋଟି ଜଗତ ଉଦ୍ଧାରଣ ।
ଦାସଜନକଇ ଦେଖିଲେ ହସନ୍ତି
ତେଣୁ ସେ ସୁରଙ୍ଗ ଅଧର ବିଘଂସନ୍ତି ।
ଚକ୍ଷୁ ନିଚଳ କରିଣ ଦେବ ଚାହେଁ
ନପୁଣ ମୋହର ଭଗତ ଦୁଃଖ ପାୟେ ।
କଟି ପୀତବାସ ପିନ୍ଧନ୍ତି କାଛି କରି
ସେବକ ନିମିତ୍ତେଣ ଧାମନ୍ତି ଚକ୍ରଧାରୀ ।
ଚାରିକଟି ବହଇ ଚତୁଧାମ ନଦୀ
ଆରତ ଭଞ୍ଜନ ବାନା ଯାହାର ପ୍ରସିଦ୍ଧି ।
କୁସୁମ ଚନ୍ଦନ ସୁଗନ୍ଧ ଝୀନ ବାସ
ରତ୍ନ ଆଭରଣ ଭୋଗ ଯେ ବିଳାସ ।
ଦେଖିଣ ଦେବତାଏ ହୋଇଲେ ତ୍ରିପ୍ତୁତି
ଜାଣିଲେ ବାସୁଦେବ ବାସନା ପ୍ରକୃତି ।
ଦେବେଣ ଦୁର୍ଲ୍ଲଭ ମାନବେ ଅଗୋଚର
ଜୟ ଜୟ ମାଧବେ ତୁ ପରମ ନିରାକାର ।
ଅନନ୍ତ ପୁରୁଷୋତ୍ତମ ତୁ ସହସ୍ର ମୂରତି
ସହସ୍ରେ କର ସହସ୍ରେ ସୂର୍ଯ୍ୟ ଜ୍ୟୋତି ।
ସହସ୍ରେକ ଶିର ସହସ୍ରେ ଲୋଚନ
ସହସ୍ରେ କୋଟି ଯୁଗ କଳାକ ବିମୋଚନ ।

x x x

ଭାଇ ଭାରିଯା ଭୟେଣୀ ସହିତେ
ନୀଳଗିରି ବିଜୟେ ଜଗତ ଜନ ହିତେ ।
ବିବିଧ ବିନୋଦେ ତୁ କରୁ କ୍ରୀଡ଼ାରସ
ତୀର୍ଥଯାତ୍ରା ନାନା ବିଧାନ ସରସ ।

ପାଟଛତ୍ର ଚାମର ଦାସ ଦାସୀ ଜନ
ଅବିକାର ପାତନା ତୋ ନ ଜାଣନ୍ତି ଆନ ।
ଯାହାଙ୍କର ହୃଦୟା କରୁ ବ୍ରହ୍ମରାଶି
ସେ ତୋହୋର ଚରଣେ ଶରଣ ପଶଇ
ଆସି ।
ଇହ ଲୋକେଣ ଭକ୍ତି ଅନ୍ତେଣ ସ୍ୱର୍ଗଯାଇ
ଦେବଙ୍କର ତୁଲେ ଯୁଗେ ଯୁଗେ ଥାଇ ।
ତୁ ସେ ନାରାୟେଣ ଶରଣ ରଖନ୍ତା
କୀଟୁଂ ବ୍ରହ୍ମ ସବୁହିଂ ଯେକଇ ଦେଖନ୍ତା ।
ଧନୀ ନିର୍ଦ୍ଧନ ଅବଳ ବଳ ନାହିଂ
ତୋହୋର ଆଗେ ସ୍ୱାମୀ ଜପ ମନ୍ତ୍ର କାହିଂ ।
ବେଦ ପୁରାଣେ ତୁ ଅଟୁ ଆଦିପତି
ତୋହର ଆଗେ କିସ ମୋ ମୁକତି ।
ବ୍ରହ୍ମା ତରସ୍ତ ହୁଅଇ ଯାର ଆଗେ
ରୁଦ୍ର ସାମାନ୍ୟ ନୋହଇ ଯାକୁ ଯୋଗେ ।
ସର୍ବଦେବ ନିସ୍ତାରଣ ସର୍ବଜୀବ ଅନ୍ତର୍ଯ୍ୟାମୀ
ବନ୍ଦଇ ଜଗନ୍ନାଥ ପରମବ୍ରହ୍ମ ସ୍ୱାମୀ ।
ମୁହିଂ ତୋହୋରେ ଶରଣ ପଶିଲି ଜଗନ୍ନାଥ
ଉଦ୍ଧରି ଧର ମୋତେ ଶଙ୍ଖ ଚକ୍ର ହସ୍ତ ।

x x x

ମୁହିଂ ବଳରାମ ଦାସ ଅଟଇ ତୋହର
ତୁ ଦେବ ହୃଦରେ ବସସି ମୋହୋର ।

ଶ୍ରୀରାମ ରୂପ ଜାନକୀପତି ମୂର୍ତ୍ତି
ସପ୍ତମ ଅବତାର ହୋଇଲେ ଶ୍ରୀପତି ।
ରାବଣର ଦର୍ପ ଧ୍ୱଂସିଲେ ଯେବଣ କୃତ୍ୟେ
ତାହା ମୁଁ ବିଚାରି ରଚିବଇ ଗୀତେ ।
ଯେ ଜନ୍ମ ମୋହର ସାର୍ଥକ କରିବି ତୋତେ
ସେବି
ଯାହା ସେ ବଖାଣ କଲା ବାଲ୍ମିକ
ମହାକବି ।
ତାହା ମୁଂ ସୁମରିଣ ଧ୍ୱଂସିବି ପାପରାଶି
କରସି କରୁଣା ମୋତେ ନୀଳଗିରିବାସୀ ।
ଶୁଣିଣ ପ୍ରସନ୍ନ ମୋତେ ହୋଇଲେ
ଜଗନ୍ନାଥ
ହୃଦେ ପ୍ରକାଶ ମୋର ଶଙ୍ଖ ଚକ୍ର ହସ୍ତ ।
ସ୍ୱାମୀର ଆଜ୍ଞା ପ୍ରମାଣେ ଶିରେ ଧରି
ଗ୍ରନ୍ଥ ବଖାଣିମି ବୋଲି ମନରେ ବାଞ୍ଛା
କରି ।
ଶୁଣିମା ସୁଜ୍ଞ ଜନେ ଶ୍ରୀରାମ ମହିମା
ସଦାଶିବ ଆଗେ ଯାହା ପଚାରିଲେ ଉମା ।
ପ୍ରସନ୍ନ ଚିତ୍ତ ହୋଇଣ କହନ୍ତି ଶୂଳପାଣି
ମୁହିଂ ତାହା ପଣ୍ଡିତ ମୁଖୁଂ ଅଛି ଶୁଣି ।
ନୀଳସୁନ୍ଦର ଗିରି ଜଗନ୍ନାଥଙ୍କ ପ୍ରସନେ
କହିବି ରାମାୟେଣ ଅମୃତ ବଚନେ ।



# ଈଶ୍ୱରପାର୍ବତୀଙ୍କ ଉକ୍ତି-ପ୍ରତ୍ୟୁକ୍ତି

କଇଳାସ କନ୍ଦରେ ଅଛନ୍ତି ବିଶ୍ୱନାଥ
ଯେସନ ସମୟେ ଯାଇ ମିଳିଲେ ଚଉମାଥ ।
ଦେଖିଣ କୃତକୃତ ହୋଇଲେ ତ୍ରିପୁରାରି
ଉଠିଣ ବିଧାତାଙ୍କୁ କୋଳାଗ୍ରତ କରି ।
ପୀରତି କରିଣ ବସାଇଲେ ନେଇ
ବ୍ରହ୍ମାଙ୍କୁ ଦେଖିଣ ଆନନ୍ଦ ଉମାସାଇଂ ।
ଏକ ଆରକେଣ ପୁଛନ୍ତି କୁଶଳ
ସୃଷ୍ଟିର କଥା ବ୍ରହ୍ମା କହିଲେ ସକଳ ।
ସଦାଶିବ ବୋଲନ୍ତି ଶୁଣିମା ପିତାମହ
ବଳ ଖିନ୍ନ ଭଗ୍ନ ବୋଇଲା ମୋର ଦେହ ।
ପାର୍ବତୀ ବିକଳ ବହୁତ ମୋତେ ଦେଖି
କେବଣ କାରଣଯେ ବୁଝ ଅଷ୍ଟ ଆଖି ।
ବ୍ରହ୍ମା ବୋଇଲେ ଦେବ ଅଛଇ ମୁହିଂ ଜାଣି
ଯେଣେ ସେ ମୁଂ ଅଇଲି ତାହା ଶୁଣ
ଶୂଳପାଣି ।
ଧର୍ମ ନଥାପିଣ ମହାଯାଗ ଭାଙ୍ଗିଲୁ
ଦକ୍ଷ ପ୍ରଜାପତିଙ୍କୁ ଅନେକ ଗଞ୍ଜିଲୁ ।
ସେ ଦୋଷେ ତୋହୋର ଶରୀର ସୁଖେ ନାହିଁ
ତୁହି ସିନା ଭିଆଇ ଅଛୁ ଉମାସାଇଂ ।
ପାପ ପୁଣ୍ୟ ବୋଲିଣ ଦୁଇ ପଛ କଲୁ
ପୁନ୍ୟେଣ ପାପେ ଦଗଧି ହୋଇଲୁ ।
ଯାଗଯଜ୍ଞ ଜପ ତପ ଦାନ ଧର୍ମ
ଯେହା ଝିଙ୍ଗାସନ୍ତେ ପାଇ ପାପ କର୍ମ ।
ଅହନ୍ତା ଘେନିଣ ଯେ ବିଚାର ନକଲୁ
ତେଡ଼େ ମହାଧର୍ମ ହେଲେ ଝିଙ୍ଗାସିଲୁ ।
ତହିଂର ପାପେଣ ବଢ଼ିଲା ତୋତେ ରୋଗ
ଶରୀର ଅସୁଖେଣ ଅସାଧନ ଯୋଗ ।
ଯେବେ ସଦାଶିବ ମୋହୋର ବୋଲକର
ତାରେକ ବ୍ରହ୍ମରାମ ନାମ ତୁ ଉଚ୍ଚାର ।
ଯେ ସେ ପ୍ରମବ୍ରହ୍ମ ସଂସାର ଏଣେ ତରି
ରାମ ନାମ ସୁମରଣା କରି ତ୍ରିପୁରାରି ।
ବିଶ୍ୱାମିତ୍ର ମୁନି ଅନୁଷ୍ଟୁପ ଛନ୍ଦ
ଯେ ସେ ରାମ ନାମ ହୃଦରେଣ ବନ୍ଦ ।
ହେଉ ପରାପତ ତୋତେ କଳପ ପଦାର୍ଥ
କଳୁଷ ବିସର୍ଜିଣ ହୁଅ ତୁ ସୁଆର୍ଥ ।
ଯେତେ ବୋଲି ବ୍ରହ୍ମା ଚତୁର୍ବେଦ ଘୋଷି
ରୁଦ୍ରକଇ ଆଶିଷ କହିଲେ କମଳ କୋଷୀ ।
କୃତଆଞ୍ଜୋଳି ହୋଇଣ ସଦାଶିବ
ବୋଲନ୍ତି ତୁମ୍ଭେ ଶୁଣ ହୋ ଦେବଙ୍କର
ଦେବ ।
ଅନେକ ସ୍ତୁତି ଯେ କଲା ଶୂଳପାଣି
ତୁ ସେ ପିତାମହ ମୋହୋର ମନ ଜାଣି ।
ଆଜ୍ଜୁଂ ରାମ ନାମ ଜପିବି ଅନୁବ୍ରତେ
ତୋହୋର ପ୍ରସନ୍ନ ମୋତେ ହଉ
ପରାପତେ ।
ଏଥୁ ଅନନ୍ତରେ ଗଲାକ ଶୂଳପାଣି
ସଦାଶିବ ହରଷେ ଭଣଇ ରାମବାଣୀ ।
ନିତି ନିତ୍ୟକର୍ମ ସାରିଣ ଶଙ୍କର

ଜପଇ ରାମ ନାମ ବେନି ଯେ ଅକ୍ଷର ।
ଦିନୁ ଦିନୁ ଶରୀର ହୋଇଲାକ ସୁସ୍ଥ
ପରମ ସନ୍ତୋଷ ହୋଇଲେ ଶୂଳହସ୍ତ ।
କ୍ଷଣହେଂ ନଛାଡ଼ନ୍ତି ଶ୍ରୀରାମର ନାମ
ହୃଦ ପଦ୍ମ ମଧ୍ୟେ କଲାକ ବିଶ୍ରାମ ।
ଯେସନେକ କେତେକାଳ ଯହୁଂ ଗଲା
ହେମବନ୍ତର ନନ୍ଦିନୀ ତାହା ସେ ଜାଣିଲା ।
ଦିନେକ ସଦାଶିବ ଜପିବାର ବେଳେ
ପାର୍ବତୀ ନମଇଂ ଈଶ୍ୱର ପାଦତଳେ ।
ଭୋ ଦେବ ଈଶ୍ୱର କେବଣ ଜପ ଜପୁ
ମୋତେ ହେଂ ମାୟା ଯେ ଅଛି ତୋର
ବପୁ ।
ମୁହିଂ ତୋର ଚରଣେ ସର୍ବଦା ଅଟଇ ଦାସୀ
କର ଅନୁଗ୍ରହ ମୋତେ କପିଳାସବାସୀ ।
ଯେତେ ବୋଲି ଦେବୀ ନମଇଂ ପୁଣ ପୁଣି
ହସନ୍ତି ସଦାଶିବ ବଦନ୍ତି ପ୍ରିୟବାଣୀ ।
ଉଠ ଉଠ ସଖି ଗୋ ମମ ପ୍ରାଣ ସରି
ତୋତେ କି ଗୁପତ ଯେ ଅଛଇ ମୋହରି ।
ଆପଣେ ଶ୍ରୀଭୁଜେ ତୋଳିଲେ ଦେବଶୂଳୀ
ଜାନୁରେ ବସାଇଣ କହନ୍ତି ରାମକେଳି ।
ଶୁଣ ଶଶିମୁଖୀ ଗୋ କହଇ ମୁହିଂ ତୋତେ
ପିତାମହ ଗୁପତେ ଯାହା କହିଗଲେ
ମୋତେ ।
ବିଷ୍ଣୁର ଏକ ନାମ ସର୍ବ ବେଦ ସରି
ସହସ୍ରେକ ନାମ ଯେ ଉଚ୍ଚାରଣ କରି ।
ଯେ ଯେତେକ ଫଳ ହୋଯେ ସୁମରନ୍ତେ
ଯେଥୁ ଅଧିକ ହୋଇବ ରାମନାମ ଜପନ୍ତେ ।
ଯେ ସେ ସକଳ ବେଦର ଅଟଇ ସାର
ଯେହା ସୁମରନ୍ତେ ଖଣ୍ଡଇ କ୍ଳେଶ ଭାର ।
ରାମନାମ ବୋଲିଣ ସୁମରନ୍ତି ମୁନି
ରାମନାମ ଜପିଲେ ସେ
ବୋଲନ୍ତି ବ୍ରହ୍ମଜ୍ଞାନୀ ।
ରାମନାମ ସୁମରି ବ୍ରହ୍ମା ଜଗତର ପିତା
ରାମନାମ ସୁମରିଲେ ହୁଅଇ ଜଗତ
ଜିତା ।
ଶ୍ରୀରାମ ସୁମରଣା କରଇ ଦେବୀ ଶ୍ରୀଆ
ତେଣୁ ସେ କମଳା ବିଷ୍ଣୁନାଥ ପ୍ରିୟା ।
ତାରେକ ବ୍ରହ୍ମଜ୍ଞାନ ଯାହା ହାଦେ ଭଣି
ଯେ ସେ ମହାମନ୍ତ୍ର ସମରିକ୍ଷ ବାଣୀ ।
ମୁହିଂ ତାହା ଜପଇ ପରମ ଯୋଗ ତତ୍ତ୍ୱଂ
ତେଣୁ ସେ ଶରୀରକଇ ନ ବାଧଇ ମୃତ୍ୟୁ ।
ଉମା ବୋଇଲେ ଦେବ କହିଲନି ଯାହା
ନାରାୟଣ ସ୍ୱାମୀ ସେ ସର୍ବଦେବ ନାହା ।
କେବଣ ଅବତାର ରାମ ନାମ କହି
କିମର୍ଥେ ଅବତାର ହୋଇଲେ ସେ ମହୀ ।
ଅବର୍ଣ୍ଣ ଅରୂପ ଅଶ୍ରୁତି ନାମ ଯାର
ମୃତ୍ୟୁ ଲୋକେ କିପାଇଂ ସେ ହୋଇଲେ
ଅବତାର ।
ଯେହା ସଞ୍ଚେପି ମୋତେ କହ ପ୍ରାଣନାଥ
ଶୁଣିମି ଶ୍ରୀରାମର ଚରିତଳେ ଜାତ ।
ବୋଲନ୍ତି ଦିଗବାସ ଶିବା ମୁଖ ଚାହିଂ
ବିଷ୍ଣୁର ପୁରାଣ ତୁ ଶୁଣ ପ୍ରାଣସହି ।



## ଦଶରଥଙ୍କ ପୁତ୍ରଚିନ୍ତା

ଶୁଣ ଶଶିମୁଖୀ ଗୋ କହନ୍ତି ତ୍ରିପୁରାରି
ରବିତଳେ ଦଶରଥଙ୍କୁ ନାହିଁ ସମସରି ।
ପ୍ରତିଜ୍ଞାବନ୍ତ ରାଜା ବୋଲନ୍ତି ତ୍ରିପୁର
ସ୍ୱର୍ଗେଣ ପ୍ରଶଂସା କରଇ ବଜ୍ରଧର ।
ଯେଥୁ ଅନନ୍ତରେ ଅଯୋଧ୍ୟାର ପତି
ସଭାକରି ବିଜୟେ ଯେ ବୀର ଚକ୍ରବର୍ତ୍ତୀ ।
ମନ୍ତ୍ରୀ ଅମାନାତ୍ୟ ଘେନିଣ ନୃପମଣି
ବଶିଷ୍ଠଙ୍କୁ ଚାହିଂ କହଇ ମୃଦୁବାଣୀ ।
ଭୋ ମହାମୁନି ମୁଂ ପଚାରଇ ତୋତେ
ଅନୁଗ୍ରହ ବଚନେ କହିବାକ ମୋତେ ।
ସୂର୍ଯ୍ୟବଂଶୀ ମୋହୋର ଧାର୍ମିକ ସତ୍ୟବାଦୀ
ତିନିଲୋକରେ ସେ ମହିମା ପ୍ରସିଦ୍ଧି ।
ଇକ୍ଷ୍ୱାକୁଭୃ ମାନଧାତା ହରିଚନ୍ଦନ ନୃପତି
ଦିଲୀପ ଭାଗ୍ୟରଥୀ ରଘୁ ଚକ୍ରବର୍ତ୍ତୀ ।
ଯେହାଙ୍କର କଥା ମୁନି ପୁରାଣେ ବଖାଣି
ଧର୍ମ ଶାହାସ୍ତ୍ର ବେଦ ଆଗମନ୍ତ ଜାଣି ।
ପୁତ୍ର ସମ କରି ସେ ପାଳିଲେ ଜନପ୍ରଜା
ଅନେକ ଯାଗଯଜ୍ଞ କଲେକ ମହାରାଜା ।
ଯେହାଙ୍କର କାଳେ ନୋହିଲା ଅନାବୃଷ୍ଟି
ଦିଗପାଳେ ପାଳନ୍ତି ସୁଲଭେ ନବସୃଷ୍ଟି ।
ତାହାଙ୍କର କୁଳେ ହୋଇଲି ମୁହିଂ ଜାତ
ମୋହୋର ଅନୀତି ନାହିଁ କଦାଶ୍ଚିତ ।
ନଉଶତ ବରଷ ହୋଇଲା ମୋତେ ଆସି
କିମ୍ପାଇ କୁଳ ମୋର ହୋଇଲାକ ଧ୍ୱଂସି ।
ପୁତ୍ରର ବିହୁନେ ଜୀବନେ କିସ କାର୍ଯ୍ୟ
ପୁତ୍ରର ବିହୁନେ ପରକୁ କରଇ ଲାଜ ।
ଅପୁତ୍ରିକ ହୋଇଲେ ନରକେ ବସେ ଯାଇ
ପୁତ୍ର ନଥିଲେଣ ଘରେ ସୁଖ ନାହିଂ ।
ପୁତ୍ର ନୋହିଲେଣ ସୁଖ ନାହିଂ ଜାଣ
ପୁତ୍ର ଅଟଇ ଯେ ପିଣ୍ଡକୁ କାରଣ ।
ଅପୁତ୍ରିକ ମୁଖ ଚାହିଂ ନ ଯୋଗାଇ
ଅପୁତ୍ରିକ ଲୋକର ଅନ୍ନ ହିଁ ନ ଖାଇ ।
ଅପୁତ୍ରିକ ସଙ୍ଗେ ନୋହିବ ସଦଗୋଷ୍ଠୀ
ଅପୁତ୍ରିକ ବାପୁଡ଼ା ଅଟଇ ପରମକଷ୍ଟୀ ।
ପୁତ୍ର ନଥିଲେଣ ଧନେ କିସ କାର୍ଯ୍ୟ
ପରକଇ ଯେବେ ହୋଇବ ଗ୍ରାହିଯ ।
ଅନେକ ଛନ୍ଦେଣ ଅର୍ଜନ୍ତି ଜନେ ବିତ୍ତ
ପୁତ୍ର ନଥିଲେ ତା ନୁହଇ ଜାଣ ହିତ ।
ପରବିତ୍ତ ଧ୍ୱଂସିଲେ କିସ କାର୍ଯ୍ୟ ଅଛି
ପୁତ୍ର ବିହୁନେ ଦେହ ନଯୋଗାଇ କିଛି ।
ସକଳ ଧର୍ମର ହାଦେ ପୁତ୍ର ହିଁ ସେ ମୂଳ
ପୁତ୍ର ନଥିଲେ ହେଁ ନରହଇ କୁଳ ।
ମୁହିଂ ମହାରାଜା ପୁତ୍ର ମୋର ନାହିଂ
କାହାକୁ ହିଂ ରାଜ୍ୟ ଅନ୍ତେ ଦେବି ମୁହିଂ ।
କରିବି ବନବାସ ପିନ୍ଧିଣ କଷାବାସ
ପୁତ୍ର ବିହୁନେ ମୋର ରାଜ୍ୟକୁ କିସ ଆଶ ।
କହିଣ ଗଦ ଗଦ ନୃପତି ଶିରୋମଣି
ବଶିଷ୍ଠଙ୍କ ମୁଖଚାହିଂ ରୋଦଇ ପୁଣ ପୁଣି ।

ରାଜାର ବୈକୁଲ୍ୟ ଦେଖିଣ ମନ୍ତ୍ରୀଗଣ ।
ପୁରାତନ କଥା କହି କରନ୍ତି ତିଆରଣ ।
କିମ୍ପା ତୁ ଆରତ ହୋଉ ଚକ୍ରବର୍ତ୍ତୀ
ନକର ଶୋଚନା ତୁ ଅଯୋଧ୍ୟାର ପତି ।
ଯେତେବେଳେ ଯାହାକୁ ପ୍ରାପତ ଯେହ୍ନେ ଯୋଗ
ସେ କଥା ବିଚାରିଣ ଅଛଇ ଭୋଗାଭୋଗ ।
ଉଚ୍ଛୁକ ହୋଇଲେ କି ତହିଁର ଫଳ ପାଇ
ଯେ ଯାହାର ଅର୍ଜିଲା ମେଣ୍ଟଣା ନଯାଇ ।
ପୂର୍ବେ ଯାହା କରି ଏବେ ତାହା ଭୁଞ୍ଜି
ଶୁଭାଶୁଭ ଲେଖନ ସେ ଧାତାର ପୂର୍ବପାଞ୍ଜି ।
ତୁମ୍ଭେ ଯେବେ ତପ କରିଅଛ ରାୟେ ।
ଅଳପ ସମୟେ ତୋର ହୋଇବ ତନୟେ ।
ମନ୍ତ୍ରୀ ତହୁଂ ଯେସନେକ ଶୁଣିଣ ବୃତ୍ତାନ୍ତ
କର ଯୋଡ଼ିଣ କହଇ ସୁମନ୍ତ ।
କଥାଏ କହିବି ମୁଁ ନୁହଇ ନା ଆନ
ସାବଧାନ ହୋଇ ତୁମ୍ଭେ ଶୁଣ ସଭାଜନ ।
ଭୋ ଦେବ ଦଶରଥ ଶୁଣ ପୂର୍ବ ବାଣୀ
ସନନ୍ତ କୁମାରଙ୍କ ତହୁଁ ଅଇଲି ମୁହିଁ ଶୁଣି ।
ଗଙ୍ଗା କୂଳେଣ ଯେ ଅନେକ ଋଷି ଥିଲେ
କଥା ପଟାନ୍ତରେ ଏହା ବଖାଣିଲେ ।
ଦଶରଥ ରାଜା ଯେ ଅତି ପୁଣ୍ୟବାନ
କିମ୍ପାଇ କୋଳେ ତାର ନୋହିଲା ନନ୍ଦନ ।
ଶୁଣିଣ କହନ୍ତି ଦେବେ ସନନ୍ତ କୁମାର
ସ୍ୱର୍ଗରେ ଆଜି ହୋଇଥିଲାକ ବିଚାର ।
ମୃତ୍ୟୁଲୋକେଣ ଯେ ଦଶରଥ ରାଜା
ବାସୁଦେବେ ହୋଇବେ ତାହାର ତନୁଜା ।
ରାବଣ ମାରିବେ ଦେବଙ୍କର ହିତେ
ତେବେ ସେ ସ୍ୱର୍ଗେଣ ଦେବେ ବସିବାକୁ ସୁସ୍ତେ ।
ଯେସନେକ ବିଚାର ବସି କରନ୍ତେ ଦେବଗଣ
ଦଶରଥ ରାଜାକୁ କଲେଣ କଲ୍ୟାଣ ।
ସ୍ୱର୍ଗର ବାରତା ନୋହଇ ପୁଣି ଆନ
ସୁରଗଣ ସଭାରେ ବିଚାର ଏସନ ।
ସନନ୍ତକୁମାରଙ୍କ ଯେସନେକ ବାଣୀ
ମୁନିଜନେ ଆନନ୍ଦ ହୋଇଲେ ତାହା ଶୁଣି ।
ପୁଣ ପୁଣ ତପଶୀଳେ ପଚାରନ୍ତି ରହି
କଥାଯେକ ପଚାରିବୁ ଯିବ ତୁମ୍ଭେ କହି ।
କେତେକାଳେ ପୁତ୍ର ହୋଇବ ଦଶରଥ
ଯେହା ସଞ୍ଚପିଣ କହସି ଯଥାର୍ଥ ।
ସନନ୍ତକୁମାର ବୋଲନ୍ତି ଶୁଣ ଋଷି
ଋଷିଶିଂଘ ମୁନି ଯେ ବିଭାଣ୍ଡେକ ଶିଷି ।
ସେ ଯଦି ଅଯୋଧ୍ୟାକୁ ଆସିବେ ଯେହିକ୍ଷଣି ।
ପୁତ୍ର ପ୍ରାପତ ହୋଇବ ଦଶରଥ ନୃପମଣି ।
ଯେତେ କହିଗଲେ ସନନ୍ତକୁମାର
ମୁହିଁ ତାହା ଶୁଣିଲି କଥା ତତ୍ତ୍ୱ ସାର ।
ସେ ସେ ମହାତପୀ ଅଟନ୍ତି ବ୍ରହ୍ମବେତ୍ତା
ତାହାଙ୍କର ବୋଲ କି ହୋଇବ ଅନ୍ୟଥା ।



# ଋଷ୍ୟଶୃଙ୍ଗ ଜନ୍ମ

ଭାଳି ଦଶରଥ ବିଚାରଇ ମନେ
ବିଭାଣ୍ଡେକର ପୁତ୍ର ହୋଇଲା କେସନେ ।
ସେ ସେ ମହାଋଷି ଅଟଇ ଊର୍ଦ୍ଧ୍ୱରେତା
କହ ସୁମନ୍ତ ହୋ କେବଣ ଏ କଥା ।
ରାଜାର ଅଗ୍ରତେ ଯେ ବୋଲନ୍ତି
ମନ୍ତ୍ରୀବର ।
ଶୁଣ ଦେବ ଦଶରଥ ଅଯୋଧ୍ୟା ଈଶ୍ୱର ।
ବ୍ରହ୍ମାର ମନୁ ଯେ ମରଚୀ ମୁନି ଜାତ
ମରଚୀର ସୁତ ଯେ କାଶ୍ୟପ ତପୋବନ୍ତ ।
କାଶ୍ୟପର ସୁତ ଯେ ବିଭାଣ୍ଡେକ ମୁନି
ବ୍ରହ୍ମାର ସମାନ୍ୟେ ଯେ ଉଠଇ ତାର ଧ୍ୱନି ।
ତପ ଜପ ମନ୍ତ୍ର ବ୍ରହ୍ମ ବିଦ୍ୟା ଜାଣଇ
ପୁରାତନ କଥାନ୍ତ ନିତ୍ୟେ ବଖାଣଇ ।
ଶୁଦ୍ଧ ଶରୀର ଯେ କଳଙ୍କ ନାହିଁ କିଛି
ସାଧୁ ମହିମା ସେ କଶ୍ୟପର ବଛି ।
ଅନେକ ତୀର୍ଥକଇ ଗମିଣ ତପକଲା ।
ବ୍ରହ୍ମଋଷିପଣେ ଗଣିତା ହୋଇଲା ।
କେତେହେଁକ ସମୟେ କଉସିକ ନଦୀ ତୀରେ
ପର୍ଣ୍ଣକୁଟୀ କରି ରହିଲେ ବନ ଘୋରେ ।
କାଳେଣ ଉର୍ଭାସି (ଉର୍ବଶୀ) ଯେ
ଦାସୀଗଣ ଘେନି
ଜଳକ୍ରୀଡ଼ା କରିଣ ଅଇଲା କାମେନୀ ।
ବିପିନ ଭିତରେ ଅଛଇ ସରୋବର
କମଳ ପୁଷ୍ପ ତହିଁ ଅଛଇ ଅପାର ।
ସ୍ଫଟିକର ପାବଛ୍ଛ ଅଛଇ ଚଉକତି
ନାନା ଜୀବ ଜଳରେ ଅଛନ୍ତି ଅପ୍ରମିତି ।
ହିୟାଯେକ ପାଣିରେ ନିଜ ରୂପ ଦେଖି ।
ଶଉଚ ନିର୍ମଳ ଅମୃତମଏ ରାଶି ।
କୂଳେଣ ଅପଛରା ଯେ ଆସି ହେଲା ଉଭା
ପରିଜନ ସଙ୍ଗେ ଦିଶଇ ମହାଶୋଭା ।
ଜଳେ ପଶି ବାଳୀ ପଖାଳଇ ଅଙ୍ଗ
ଝିନବାସ ତିନ୍ତି ଦିଶଇ ଥନ ଜଙ୍ଘ ।
ସ୍ୱଭାବେ ଯୁବତୀ ଯେ ସ୍ୱର୍ଗର ଅପଛରୀ
ନାହିଁ ପଟାନ୍ତର ଉପମା ଦେବା ସରି ।
ତପୀଙ୍କର ତପ କି ସେ ଦେଖିଲେଣ ଥିବ
ଯାହାର ଆଗ ତରନ୍ତ ହୋଇବ କାମଦେବ ।
ମୁଖ ଦେଖି ଚନ୍ଦ୍ର ଗଲାକ ପଳାଇ ।
ଦୁଇଲକ୍ଷ ଯୋଜନେ ସେ ରହିଲାକ ଯାଇ ।
ନୟନ ଯୁଗଳ ଦେଖି ନୀଳ-ଉତ୍ପଳ
ବୁଡ଼ି ମରିବ ବୋଲି ପଶିଲାକ ଜଳ ।
ନାସା ତିଳଫୁଲି ପଟାନ୍ତର କରି
ପଛେ ଲୁଚିଲା ସେ ମରିତ ମନ କରି ।
ଚାମର କେଶ ତାର ଦେଖିଣ ଚାମେରୀ
ବନରେ ରହିଲା ସେ ଗୋଛୁ ରୂପ ଧରି ।
କର୍ଣ୍ଣ ଦୁଇ ଯମ ବରୁଣର ପାଶୀ
ନୁହନ୍ତି ସମ ବୋଲି ଗଲେ ତହୁଁ ଖସି ।
ଡାହାଣବର୍ତ୍ତ ଶଙ୍ଖ ଜାଣି କର୍ଣ୍ଣ ଶୋଭା ।
ସମୁଦ୍ରେ ପଶିଲାକ ନୋହିଲାକ ଉଭା ।

ପଦ୍ମନାଡ ଜାଣି ଶୋହଇ ହସ୍ତ ବେନି
ନୋହଇ ସମ ସେ କଣ୍ଟକ ଭାବ ଘେନି ।
ରତ୍ନର କଳସେ ଅମୃତ ପୂରୋଇ
ତେସନ ସଂଯାତ ସେ ଦିଶଇ କୁଚଦୁଇ ।
ମାତୁଳଙ୍ଗ ଫଳ ସେ ଯେ ପଟାନ୍ତର କରି
ପକ୍କଂ ହୋଇଲେ ସେ ଦିଶଇ ସୁସରି ।
ମଝା ଦେଖି ସିଂଘ ବନକଇ ଗଲା
ଉଦରକଇ ପଦ୍ମ ପତ୍ର ସରି ସମ ନୋହିଲା ।
ନାଭି ଗଭୀରକି ନଦୀର ଭଉଁରୀ ।
କଟିଭାଗ ଶୋଭା ନୁହଇ ପଟାନ୍ତରି ।
ମଦନ ମହୀପତି ସିଂହାସନ କି ସେ
ଜାନୁ ଉଲଟ କଦଳୀ ଜାଣି ଦିଶେ ।
ଚରଣ ଅଙ୍ଗୁଷ୍ଠି ଓଶେକ କଡ଼ି ଆଭା
ପାଦପଦ୍ମ ତଳି ଅଳତା ରଙ୍ଗ ପ୍ରଭା ।
କରତଳ ଅଙ୍ଗୁଷ୍ଠି କନେକ ଚମ୍ପାକଢ଼ି
ନଖ ସେବତୀ କୁସୁମ ପାଖୁଡ଼ି ।
ଜାଇ-ପୁଷ୍ପ ଜାଣି ଦିଶଇ ସର୍ବ ନଖ
କି ଅବା ଅଧର ଡାଳିମ୍ବ ପୁଷ୍ପରେଖ ।
ଦନ୍ତ ଗଜମୋତି ସିନ୍ଦୂରେଣ ମଣ୍ଡି
କଟାକ୍ଷ ଚାହାଣିରେ ତପୀଯେ ହୋନ୍ତି ଭଣ୍ଡି ।
ପୁଞ୍ଜି ପୁଞ୍ଜି ହୋଇ ବସନ୍ତି ରୋମପନ୍ତି
ହସି କହିଲେଣ ମୃତ୍ୟୁଜୀବ ଜୀବନ୍ତି ।
ସ୍ୱଭାବେ ସୁନ୍ଦରୀ ଯେ ରୂପେ ଗୁଣେ ସାର
ସର୍ବଦା ଯୁବା ଶରୀର ଅଟଇ ତାଙ୍କର ।
ସ୍ୱର୍ଗର ସୁନ୍ଦରୀ ସେ ଅପଛରୀ ଶ୍ରେଷ୍ଠ
ରତ୍ନ ଅଳଙ୍କାର ଭୂଷଣ ଗରିଷ୍ଠ ।
ଜଳେ ପଶିଣ ସେ କରଇ ଜଳକେଳି
ଚାରୁ ଗନ୍ଧ କୁଙ୍କୁମ ଘେନିଣ ଅଙ୍ଗେ ବୋଳି ।
ନିଗମ ସ୍ଥାନ ଦେଖି ଲଜ୍ଜା ଭୟ ନାହିଁ
କାଖ ପଖା ଯେ ଜାନୁ ଜଘନ ଦେଖାଇ ।
ବସ୍ତ୍ର ଖସିଣ ଦିଶଇ ଯଉବନ
ଅପାଙ୍ଗ ଦୃଷ୍ଟିରେ ସେ ଡାକଇ ନୟନ ।
ଅଳପ ହସିଣ ଚାହାନ୍ତି କାମେନୀ
ନାସିକା ଫୁଲାଇଣ ଚକୋର ଚାହାଣି ।
ସୁନ୍ଦରୀ ମଦନ ଚେରଷ୍ଟା ବିକାର
କିଛି ଦୂରେ ଥାଇ ଦେଖିଲେ ମୁନିବର ।
ସରୋବର କୂଳରେ ଯେ ତପ କରୁଥିଲା
କେତେହେଂକ ବେଳେ ତାର ଧ୍ୟାନ ସେ
ଭାଙ୍ଗିଲା ।
ଦେଖିଲାକ ଉର୍ଭାସୀ କରଇ ସ୍ନାହାନ
ଦିଶୁଅଛି ତାହାର ମଦନ ମରମ ସ୍ଥାନ ।
ବିଭାଣ୍ଡେକ ନୟନ ପଡ଼ିଲାକ ତହିଁ
ଆସି ନପାରଇ କାମେ ବଶ ହୋଇ ।
ନୟନ ପଡ଼ିଲାରୁ ମନ ହିଁ ରହିଲା
ଦେହ ଛାଡ଼ି ପ୍ରାଣ ପ୍ରକୃତି ଘେନିଗଲା ।
ନଖ ମୁଖ ଆଖି ବୁଲିଣ ପଞ୍ଚପ୍ରାଣ
ସ୍ତନ ଜଘନ ସେ ଭ୍ରମିଲା ପୁଣ ପୁଣ ।
ଅଧର ପୟୋଧର ମଧରେଣ ଗଲା
ନାଭି ଜିଣି ଯାଇ କାମ ମଣ୍ଡଳେ ମିଶିଲା ।
ଆସି ନପାରଇ ସଙ୍ଗ ମର୍ମ ସନ୍ଧି
ମୋହେ ଋଷି ମନ ହୋଇଲା ତହିଁ ବନ୍ଦୀ ।
ଘନ ଘନ ନିଶ୍ୱାସ ଛାଡ଼ଇ ବିଭାଣ୍ଡେକ
କନ୍ଦର୍ପ ଧ୍ୱଂସିଲା ତାର ମର୍ଯ୍ୟାଦା ବିବେକ ।
ହାଇ ଘନ ଘନ ଅଳସ କରି ଚାହିଁ
ବିରହ ବିଭଳେଣ ହୋଇଲା କାମବାଇ ।
ଧଉର୍ଯ୍ୟ ହତେ ଅଧାରଣ କାୟେ
ଅପଛରୀଙ୍କ ମୁଖ ଦେଖିଣ ମୋହ
ଯାୟେ ।
ସେ ସେ ସୁନ୍ଦୋରୀ ଯୁବତୀ ରତ୍ନରାଶି
ଇନ୍ଦ୍ର ଯାହାକଇ କଥା କହଇ ହସି ।

ବ୍ରହ୍ମାକଇ ମୋହି ପାରଇ ଯେବଣ ନାରୀ
ମୁଖ ଦେଖି ଯାହାକୁ ପ୍ରସନ୍ନ ତ୍ରିପୁରାରି ।
ନୃତ୍ୟରଙ୍ଗେ ମୋହଇ ସ୍ୱର୍ଗର ସୁରଗଣ
ମୁନିଜନ ଦେଖିଲେ ହୁଅନ୍ତି ରଣଭଣ ।
ବିଭାଣ୍ଡେକ ମୁନି ଅଟଇ ଊର୍ଦ୍ଧ୍ୱରେତା
ତାହାକୁହିଁ ହେଲେ ମୋହିଲା ବନିତା ।
ସେ ଋଷି ଅଜ୍ଞାନ ହୋଇଲେ କାମବାଣେ
ବଶ୍ୟ ହୋଇଲା ସେ ଯୁବତୀ ରନ୍ ଗୁଣେ ।
ଅନେକ କାଳର ସେ ଥିଲା ବପୁ ରଖି
ଖଳିତ ହୋଇଲା ଯେ ଅପଛରୀ କି ଦେଖି ।
ଗ୍ୟାନ ଭ୍ରଷ୍ଟ ହୋଇପଡ଼ିଲା ମୁନିବର
ପୁଣି ପ୍ରାଣ ଆସି ପଶିଲା ଶରୀର ।
କ୍ଷଣକେ ଚେତନା ସେ ପାଇଣ ଉଠିବସି
ଅନେକ ଚିନ୍ତାର୍ଥ ସେ ହୋଇଲାକ ଋଷି ।
ବୋଇଲା ତପ ମୋର ହୋଇଲାକ ଖଣ୍ଡି
ୟେ ସେ ସୁନ୍ଦେରୀ ମୋର ପ୍ରାଣ ନେଲା
ଭଣ୍ଡି ।
ଆମ୍ଭା ସଙ୍କୋଚ କରି କରଇ ସନ୍ତାପ
ବୋଇଲା ତପୀ ମୋତେ ଆକର୍ଷିଲା
ପାପ ।
ୟେଥି ଅନନ୍ତରେ ସେ ଉର୍ବାସୀ ଅପଛରୀ
ଦାସୀଗଣେ ସହିତ ଗଲା ସ୍ୱର୍ଗପୁରୀ ।
ଦିବ୍ୟ ବିମାନେଣ ବସିଲା ଯୁବତୀ
ପ୍ରବେଶ ହୋଇଲା ସେ ଅମର ବାରସ୍ୱତୀ ।
ଯହୁଁ ବିଦ୍ୟାଧରୀ ସ୍ୱର୍ଗକଇ ଗଲା
ତପସ୍ଥାନ ଉପେଖି ବିଭାଣ୍ଡେକ ଉଠିଲା ।
ସଂକୋଚ ଭରେ ସେ ଲଜ୍ଜାଭର ହୋଇ
ସରୋବର ଭିତରେ ପଶିଲା ମୁନି ଯାଇ ।
ସ୍ନାହାନ ସାରିଣ ଜଉପୁନି ପଖାଳି
ଜଳରେ ପଡ଼ି ରେତ ସ୍ଫଟିକ ମତ ଢଳି ।
ନିର୍ଜୀବ ହୋଇ ମୁନି ମଢ଼ିଆକୁ ଗଲା
ନିଜ ଆସନେ ବସିଣ ଚିନ୍ତା କଲା ।
ଯେବଣ ବୀର୍ଯ୍ୟ ମୁନି ଜଳରେ ଗଲା ଛାଡ଼ି
ସେ ଅମୋଘ ବୀର୍ଯ୍ୟ ଜଳରେ ନବୁଡ଼ି ।
ମଦନିକା ଅପଛରୀ ପୂର୍ବର ଶାପ ପାଇ
ସେ ବିପିନେ ଥିଲା ସେ ମୃଗୁଣୀ ରୂପ
ହୋଇ ।
ତୃଷାର ଆରତେ ସେ ଧାଇଂଣ ଅଇଲା
ସେହି ସରୋବରେ ଜଳ ସେ ଭକ୍ଷିଲା ।
ପାଣିର ସଙ୍ଗେ ସେ ଭକ୍ଷିଲା ଋଷିବୀର୍ଯ୍ୟ
କୁରଙ୍ଗୀର ଗର୍ଭେ ରହିଲା ମହାତେଜ ।
ଅମୋଘ ରେତ ସେ ଯେ ଜୀର୍ଣ୍ଣ ଯେ
ନୋହିଲା
ମୃଗୁଣୀର ନାଭି ପଦ୍ମ ଆବୋରି ରହିଲା ।
ଗର୍ଭବାସ ଯହୁଂ ହୋଇଲା କୁରଙ୍ଗୀ
ଏକାୟେ ରହିଲା ସେ ନୋହିଲା ଯୂଥସଙ୍ଗୀ ।
ସେହି ସରୋବର ତଟରେ ବିପିନ
ତହିଁ ରହି କୁରଙ୍ଗୀ ହରିଲାକ ଦିନ ।
ଯଥାକାଳେ ତାହାର ହୋଇଲାକ ପୁତ୍ର ଜାତ
ସୁସଞ୍ଚ ସୁନ୍ଦର ସେ ହୋଇଲା ତାର ଗାତ୍ର ।
ମନୁଷ୍ୟ ଶରୀର ଶିରରେ ବେନି ଶିଙ୍ଗ
ଜାଣି ପଟାନ୍ତର ନାହିଁ ନା ଅନଙ୍ଗ ।
ପୁତ୍ରଜାତ କରି କୁରଙ୍ଗୀ ସ୍ୱର୍ଗଗଲା ।
ପୂର୍ବର ଅଭିଶାପେ ହେଲେଣ ନାଶଗଲା ।
ସ୍ୱର୍ଗରେ ଗଉରୋବ କଲାକ ବଜ୍ରପାଣି
ପୂର୍ବକୁ ବିସ୍ରୋତି ତାର ଯୋଡ଼ିଲାକ ଆଣି ।
ଯହୁଁ ସେ ମୃଗୁଣୀ ସ୍ୱର୍ଗକଇ ଗଲା
ଜନନୀ କି ନଦେଖି ପୁତ୍ର ଶୋକ କଲା ।
ରାତିକ ରୋବିଲା ସେ ପୋଖରୀର କୂଳେ
ଆହାର ବିହୁନେ ସେ କ୍ଷୁଧାର ବିକଳେ ।

ବିଭାଣ୍ଡେକ ମଢ଼ିଆକୁ ଶୁଭିଲା ଶବଦ
ଶୁଣିଣ ମହାଯତି ହୋଇଲା ତବଦ ।
ପ୍ରଭାତ କାଳେଣ ସେ ଗଲା ତପୀସ୍ୱାଇଁ ।
ବାଳୁତ ଦେଖି ପଞ୍ଚୁ ମନେଣ ଭାଳଇ ।
କିସ ଅପୂର୍ବ ଏ କାହୁଂଣ ଅଇଲା
ଅରଷ୍ଟି ଜୀବ ବୋଲି ବିଭାଣ୍ଡେକ ବୋଇଲା ।
ମନୁଷ୍ୟେ ଶରୀର ଶିରରେ ଶୃଙ୍ଗ ଦୁଇ
ଉଧକଇ ଚାହିଁ ବିସ୍ମୟେ ମୁଖ ହୋଇ ।
ଆକାଶୁ ଶବଦ ଶୁଭିଲା ଅନ୍ତରୀକ୍ଷ
ଭୋ ମୁନି ବିଭାଣ୍ଡେକ ତୋହର ଯେ ବଛ ।
ଉର୍ବାସୀକି ଦେଖିଣ ତୁ ଛାଡ଼ିଲୁ ଯେବଣ ରେତ
ଜଳର ମଧରେ ତୁ ଯାହା ଯେ କଲୁ ଗୁପତ ।
ମଦନିକା ଅପକ୍ଷରୀ ଶାପ୍ୟେ ମୃଗୁଣୀ
ହୋଇଥିଲା ।
ତୃଷାର କାଳେ ସେ ନୀର ଭକ୍ଷି ଗଲା ।
ପୁତ୍ରେ ଜାତ କରି ଅଇଲା ଅପକ୍ଷରୀ
ସଂଭାଳ ବିଭାଣ୍ଡେକ ଯେ ତନୟେ
ତୋହରି ।
ଯେଣେ ଦେବକାର୍ଯ୍ୟ ଅଛଇ ବହୁତ
ଯେହାର ପ୍ରସାଦେ ସକଳ ଦେବେ ସୁସ୍ଥ ।
ବାସୁଦେବ ଉପୁଜିବେ ଯେହାର ଯାଗ କଲେ
ଶାପ୍ୟ ପାଇବୁଟି ସଂଗ୍ରହଣ ନକଲେ ।
ଯେ ପୁତ୍ରର ନାମ ହାଦେ ଅଟଇ ରଷିଶୃଙ୍ଗ
ସ୍ୱର୍ଗେ ବସିବ ଯେ ବ୍ରହ୍ମମୁନି ସଙ୍ଗ ।

ସ୍ୱର୍ଗର ବାଣୀ ହାଦେ ବିଭାଣ୍ଡେକ ଶୁଣି
ତଲୟେ କରିଣ ଯେ ଯୋଗ ବଳେ ଜାଣି ।
ଯେହାର ଆହୁତି ଦେଲେ ବିଷ୍ଣୁ ହେବେ
ଜାତ
ତେବେ ସେ ନାଶିବେ ରାବଣ ଦଇତ ।
ସମୟ ଜାଣିଣ ଯେ ପୁତ୍ରକୁ ଘେନିଗଲା
ପ୍ରାଣହୁଁ ଅଧିକ କରି ପୁତ୍ରକୁ ପାଳିଲା ।
ଦୋହୋରା ଅଗ୍ନିର ପ୍ରସାଦେ ପୁତ୍ର ବଳୀ
ସୁରଭିର କ୍ଷୀରେଣ ଯେ ପୁତ୍ର ତା ଅଗୁଳି ।
ବିଭାଣ୍ଡେକ ରଷିର ସେ ଦେଖିଣ ତପକଲା
ପ୍ରସନ୍ନ ହୋଇଣ ଯେ ଇନ୍ଦ୍ର ତାକୁ ବର
ଦେଲା ।
ହୋଅତୁ ଆରୋଗ୍ୟ ଅମର ତନୁ ବହ ।
ତୋହର ମନବାଞ୍ଛା ମୋହର ଆଗ କହ ।
ରଷିଶୃଙ୍ଗ ବୋଇଲା ଶୁଣ ଆଖଣ୍ଡଳ
ଯେତେବେଳେ ଲୋଡ଼ିବି ବରଷିବ ଜଳ ।
ଶରୀର ଦୀକ୍ଷ ମୋର ଅଟଇ ସୁରପତି
ଲୋଡ଼ିଲେ ବୃଷ୍ଟି ତୁ କରିବୁ ତଡ଼ତି ।
ଅସ୍ତୁ ହୋଉ ବୋଲି ଗଲାକ ବଜ୍ରଧର
ଆନନ୍ଦ ହୋଇଲାକ ଶୁଣି ରଷିଶୃଙ୍ଗ
କୁମର ।
ଦଶରଥ ଆଗେ ଯେହା ସୁମନ୍ତ କହିଲା
ଶୁଣ ଗୋ ଭବାନୀ ଯେହା ଶଙ୍କର
ବୋଇଲା ।



## ଜରତା ଉପାଖ୍ୟାନ

ଆଗରେ ଦାଉଣ୍ଡି ବାଜଇ ବୀର ତୂର
ଦୋସାଧୁ ଡାକଇ ତୁମ୍ଭେ ଶୁଣିମା ନଗ୍ରନର ।
ଋଷିଶୃଙ୍ଗ ମୁନି ଯେ ବିଭାଣ୍ଡେକ ଶିଷ
କଉଶିକ ନଦୀତୀରେ ଅଟଇ ତାର ବାସ ।
ସେ ମୁନିକି ଆଣିଲେ ଯେ କରିବ ଜଳବୃଷ୍ଟି
କେ ପାରିଲେ ଆଣ ଯେ ରକ୍ଷାକର ସୃଷ୍ଟି ।
ଏସନେକ ବୋଲି ଯେ ଡାକଇ ଶବଦାଇ
ହାଟ ବାଟ ରାଜ୍ୟ ଦାଣ୍ଡରେ ବୁଲୋଇ ।
ନଗ୍ର ନରନାରୀ ଗୋଡ଼ାଇ ଦେଖନ୍ତି ।
ଯେକ ଆରକେଣ ଯେ ବିଚାରି ସାହସନ୍ତି ।
ଜରତାକୋଷୀ ନାମେଣ ଯେ ଏକଇ
ନଟନାରୀ
ବିଧାତା ଉପାୟେଣ ଅଛଉ ଅବତରି ।
ସେ ଆସି ସୁବର୍ଣ୍ଣ ଚାଙ୍ଗୁଡ଼ି ଧଇଲା
ମୁହିଁ ଋଷିଶୃଙ୍ଗଙ୍କୁ ଆଣିମି ବୋଇଲା ।
ଶୁଣିଣ ଦୋସାଧୁ ହରଷ ମନ ହୋଇ
ରାଜାର ଛାମୁକୁ ତାକୁ ଗଲାକ ଘେନାଇ ।
ଦେଖିଣ ସନ୍ତୋଷ ହୋଇଲା ମହୀପାଳ
ଜରତାକୁ ଦେଲା ସେ କନେକ ପଦ୍ମମାଳ ।
ଅନେକ ପ୍ରବୋଧ ସେ କଲାକ ନୃପମଣି ।
ଯେ ମୋହର ରାଜ୍ୟ ଉଧର ତରୁଣୀ ।
ସୁନ୍ଦେରୀ ବୋଇଲା ଯୋଡ଼ିଣ ବେନିକର
ଶୁଣ ଲମ୍ଭ ପାଦ ଯେ ଠାକୁର ମୋହୋର ।
ଯେ ତୋହୋର ଆଜ୍ଞା ଶିରେ ଦେବ ଧରି
ସେ ମହାଋଷିଙ୍କି ମୁଂ ଆଣିମି ହେଳୁ କରି ।
ଯେ ତୋହୋର କଟକେ ସର୍ବଜନେ ସୁଖୀ
ବିଶେଷେଣ ବେଶ୍ୟା ନୋହୁ ଆମ୍ଭେ ଦୁଃଖୀ ।
ବନ ପର୍ବତ ଯେ ଶାଳ ଶିଳ ବାଟ
ପାଦେଣ ଗମନ୍ତେ ଯେ ପାଇବୁ ଆମ୍ଭେ
କଷ୍ଟ ।
ନାବ ସଜ କରିଦିଅ ନୃପବର ।
ଅପ୍ରମାଦେ ଆଣିମି ମୁଂ ଋଷିର କୁମର ।
ନୃପତି ସନ୍ତୋଷ ହୋଇଲା ତାହା ଶୁଣି
ନାବ ଭିଆଣ ସେ କଲାକ ନୃପମଣି ।
ନଉକା ଉପରେ ବିବିଧ ଗଛ ରୁପି
ଫଳିଲା ଫୁଟିଲା ବୃକ୍ଷନ୍ତ ନେଇ ଥାପି ।
ଆମ୍ବ ପଣସ ଯେ କଦଳୀ ନଟୀକାଳ
ଟଭା ନାରଙ୍ଗ ଯେ ମାତଙ୍ଗ ଫଳଫୁଲ ।
ବେଲ କଇଥ ଯେ ଅଏଂଳା ଖଜୁର
ଚମ୍ପା ନାଗେଶ୍ୱର ବକୁଳ ଡଗର ।
ତରାଟ ମନ୍ଦାର ଅଶୋକ ମଲ୍ଲୀ ଜାଇ ।
କଚଣ କଣିଆର ଯେ କେତକୀ ଅଛଇ ।
ଲବଙ୍ଗ ଗୁଳୁଚି ପିପ୍‌ଳି ପାନଲତା
ପ୍ରତକ୍ଷେ ବନ କି ସେ ରଞ୍ଚିଲା ବିଧାତା ।
ଋଷିର ମଢ଼ିଆ ପ୍ରାୟେକ ପର୍ଣ୍ଣକୁଟୀ
ନାବ ମଧ୍ୟେ ରଞ୍ଚିଲେ ଅପୂର୍ବ ପୁର ଗୋଟି ।
ବାହିବାକୁ ପାଞ୍ଚନାବ ହାବେଳି ଯେକ ଗାର
କଇବ୍ରତ ଅସଭାବ ଅଛି ପାଞ୍ଚ ଡଙ୍ଗାର ।

ଯେସନେକ କୋଡ଼ିଯେ ନାବ ସଜ କଲେ
ଲତାଙ୍କ ଭିତରେ ସେ ପଲଙ୍କ ପାରିଲେ ।
ଉପରେ ଚନ୍ଦ୍ରାତପ ଟାଣିଲେ ଗୋପ୍ୟ
କରି ।
ବାହାରକୁ ନଦିଶଇ ଭିତରକୁ ଉହାଡ଼ି ।
ଶେତ ଚାମର ମୁକୁତା ମଣିଝରା
ଚଉପାଶେ ଟାଣିଲେ ଅପୂର୍ବ ପାଟଟେରା ।
ପଲଙ୍କ ଉପରେ ଅଛଇ ପାଟ ଶେଯ
ତଥିରେ ଶେଜାଇଲା ଅଛି ବସ୍ତ୍ରରାଜ ।
କୁସୁମ ପାଖୁଡ଼ା ଯେ କର୍ପୂରର ଧୂଳି
ସୁବର୍ଣ୍ଣରେ ଜଡ଼ିତ ସିନ୍ଧୁଆ ମୁରୁଳି ।
ଅଗର ଧୂପ ବାସ କରଇ ଚଉକତି
ନାବ ଚଉପାଶେ ମାଣିକର ବତୀ ।
ସୁବାସ ଫଳମାନ ଥୋଇଲା ତହିଁ ନେଇ ।
ଦୁଧ ଘୃତ ଶାକର ଯେ ଅମୃତ ଭିଆଇ ।
ଗନ୍ଧ ଚନ୍ଦନ ଯେ କର୍ପୂର କସ୍ତୁରୀ
ସୁବର୍ଣ୍ଣ ଗଡୁ ଅଛଇ ଖୋରା ଖୋରି ।
ଆଲଟ ଚାମର ଯେ ମୁକୁତା ଦର୍ପଣ
କନେକ ପଦାର୍ଥ ଯେ କାଚର ଘଟଣ ।
ଶୁଭ ଅନୁକୂଳ ଘେନିଣ ଜରତା
କାମମୋହିନୀ ମୂଳେ ବାରହ ବନିତା ।
ସଙ୍ଗତେ ଅଛନ୍ତି ଯେ ଅନେକ ପରିବାରୀ
ନଉକାରେ ବସିଲେ ଯେ ହରଷ ମନ ଧରି ।
ଆଯେ ଅଳଙ୍କାର ଦିବ୍ୟ ବାସ ପିନ୍ଧି ।
କର୍ଣ୍ଣେଣ ତଡ଼କି ବାହେ ବିଦ ମୁଦି ।
କର୍ଣ୍ଣେଣ ପଦେକ ଯେ ମୁକୁତାର ହାର
ଯଉବନ ଉପରେ ଲୁଚଇ ମୋତି ମାଳ ।
ପାଦରେ ନୂପୁର ଯେ ହସ୍ତରେ ରତ୍ନ ବାହି
ଲଲାଟରେ କସ୍ତୁରୀ ଚିତା ତାମ୍ବୋଳ ରସ
ଖାଇ ।

ସ୍ତନ ଜାନୁ ଜଘନ ବଳିଣ କାଖପାଖା
କେ ଜାଣି ପଟାନ୍ତର ସ୍ୱର୍ଗର ନାଯେକା ।
କରେ ତାଳ ମର୍ଦ୍ଦଳ ବଂଇଶୀ ବେଣୁ ଘେନି
ନୃତ୍ୟ ରସ ସଜ ଘେନନ୍ତି କାମେନୀ ।
କନ୍ୟାର ଆସନ୍ତେ ନୃପତି ଗୋଡ଼ାଇ ।
ମନ୍ତ୍ରୀ ଅମାନାତ୍ୟ ଘେନିଣ ପ୍ରବୋଧଇ ।
ତୁ ମୋହୋର ଜରତା ଗୋ ଅଟୁସି ବିଶ୍ୱାସ
ଯେମନ୍ତ ପାରୁ ତୁ ମୁନିକି ଘେନି ଆସ ।
କାମମୋହେନୀ ଘେନି ଜରତାକୋଷା ନାରୀ
ବାରହ ବନିତାଯେ ନୃପତି ପାଦେ ପଡ଼ି ।
ତୁ ଦେବ ବାହୁଡ଼ିଣ ଯାସି ନୃପମଣି
ଆଣିମୁଂ ଋଷିଶୃଙ୍ଗ ବନଗଜ ଠାଣି ।
ଯେଥେ ବିଚାର ତୁ ନକର ଦେବ କିଛି
କାଲି ଆଣି ତୋତେ ଦେବି ଋଷି ବଛି ।
ରାଜା ପ୍ରସନ୍ନ ହୋଇ ଫୁଲ ପାନ ଦେଲା
ଶୁଧ ସୁବର୍ଣ୍ଣ ଯେ ବୃଷ୍ଟି କରାଇଲା ।
ଆଗ୍ୟାଂ ଦେଲା ଶୁଭ ଅନୁକୂଳେ ଯାଅ
ମୁନିର କୁମରକୁ ବେଗେ ଭେଟ ପାଅ ।
ପଥେଣ ତୁମ୍ଭକୁ ରଖନ୍ତୁ ଦେବୀ ଦୁର୍ଗା
ଯାନ୍ତେ ଅନୁଗ୍ରହ କରନ୍ତୁ ଦେବୀ ଗଙ୍ଗା ।
ବିନାଯେକ ତୁମ୍ଭର ହରନ୍ତୁ ବିଘ୍ନଦୋଷ
ଶ୍ରୀମାଧବ ତୁମ୍ଭର ହରନ୍ତୁ କଲ୍ମଷ ।
ଲକ୍ଷ୍ମୀ ନରସିଂହ କରନ୍ତୁ ସଦୟା
ଶ୍ରୀପୁରୁଷୋତ୍ତମ ରଖନ୍ତୁ ତୁମ୍ଭର କାୟା ।
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଜଉତିଷ
ବ୍ରାହ୍ମଣେ ବେଦ କରନ୍ତି ଆଗେ ଘୋଷ ।
ଲୋକେ ଧନି ଧନି ବୋଲନ୍ତି ବେଗେ ଯାଅ
ମାହିନ୍ଦ୍ର ବେଳେ ଯେ ନାବ ପେଲି ଦିଅ ।
ନୃପତିଙ୍କି ଓଳଗି ବୋଲଇ ଜରତା
ବାହୁଡ଼ା ବିଜଯେ ଦେବ କର ଶତ୍ରୁଜିତା ।

ବୋଲଇ ମହୀପାଳ ଆମ୍ଭରେ କିସ କାର୍ଯ୍ୟ
ତୋହୋରେ ଗଲେ ରକ୍ଷା ହୋଇବ ସିନା
ରାଜ୍ୟ ।
ନାବ ଚଳିଯାନ୍ତେ କୂଳେ ବଜାଇଲେ ବାଜା
ଉଛବ ରାଜ୍ୟରେ କଲେ ଲମ୍ବପାଦ ରାଜା ।
ଚଳିଲାକ ନାବ ଯେ ଯେକ ଲୟେ ହୋଇ
ପ୍ରସାଦ ପାଇ କଇବର୍ତ୍ତେ ନାବ ନେଲେ
ବାହି ।
ବନ ପର୍ବତ କି ଚଳଇ ନଦୀ ମଧ୍ୟେ
ଆକାଶେ ଆନନ୍ଦ ହୋଇଲେ ସୁର ସିଦ୍ଧେ ।
ରାତ୍ର ଦିବସରେ ନ ବିଶ୍ରାମି ଗଲେ
ଅନେକ ଘୋର ଗିରି ବନସ୍ତ ଜିଣିଲେ ।
ଦୁସହ ଦୁର୍ଗମ ଗହନ ବନେ ଯାନ୍ତି
ଅପୂର୍ବ ପଦାର୍ଥ କୂଳରେ ଦେଖନ୍ତି ।
କାହିଁ ଗଜେ ଗଜେ ହୁଅନ୍ତି ଚଉଦନ୍ତ
କେବଣ ଶାର୍ଦ୍ଦୁଳ ଖେଦଇ ମୃଗନ୍ତ ।
କାହିଁ ଋକ୍ଷ ପୋଏ ଖେଳନ୍ତି ଖେଡ଼ରସ
କାହିଁ ହସ୍ତୀ ଦେଖି ବାନରେ ହରଷ ।
କାହିଁ ସୁରତି ଯେ କରନ୍ତି ଗଜବେନି
ନାବକୁ ଚାହିଁକେ ହୁଅନ୍ତି ଅନ୍ୟୋଅନ୍ୟି ।
କାହିଁ ମତ୍ତହସ୍ତୀକି ବିଦାରଇ ସିଂହ
ସର୍ବାଙ୍ଗେ ଶ୍ରୋଣିତ ଦିଶଇ ଦେହ ରଙ୍ଗ ।
କାହିଁ ସର୍ପକଇ ମାରଇ ବଣ ଗୋଚ୍ଛୁ
କାହିଁ ବାଘ ଡରେ ପଳାବନ୍ତି ଗୋରୁ ଦୂରୁ ।
କେବଣ ଜୀବଜନ୍ତୁ ନଦୀକୁ ଚାହାଂନ୍ତି
ନାବ ଚଳି ଯାନ୍ତେ ଦିଶନ୍ତି ପନ୍ତି ପନ୍ତି ।
ପରାକ୍ରମ କରି ହୁଅନ୍ତି ଆଗୁସାର
କେହୁ ଭୟକରି ପଶନ୍ତି ଲତାର ।
କେହୁ ପଛକଇ ଚାହିଁ ଆଡ଼େ ହୋଇଯାନ୍ତି
ଥୋକାଯେକ ଦୂର ଯାଇ ଲେଉଟି ଆସନ୍ତି ।

ଚାମରୀ ଯୂଥ କାହିଁ ପାଣି ପିଇ ଆସଇ
ନାବ ଦେଖିଣ ଯେ ଥୋକାଏ ଦୂରେ ରହି ।
କେବଣ ଠାବେ ତାଙ୍କୁ ଝାମ୍ପଇ ଶାର୍ଦ୍ଦୂଳ
ବଣ ମାର୍ଜାର କାହିଁ କରନ୍ତି ମୁଖଗୋଳ ।
କାହିଁ ଶେତ ନେଉଳ ଖେଦାଖେଦା ହୋଇ
ନେପାଳି ମୂଷାକୁ ଯେ ଅଛନ୍ତି ଗୋଡ଼ାଇ ।
ଚିତ୍ର ମୟୂର ଯେ କରନ୍ତି ନୃତ୍ୟ ରସ
କାହିଁ ବଣ ପାରୁଆ ଉଡ଼ନ୍ତି ଚଉପାଶ ।
ଗହନ ବନସ୍ତରେ ବୋବାଇ ଏକ ଜୀବ
ହୁଳହୁଳି ପ୍ରାୟେକ ଶୁଭଇ ଶବଦ ।
ପର୍ବତ ଉପରେ ଥାଇ ଦେଖଇ ଗୟଳ
ନାବ ଦେଖି ଧାଇଁ ଅଇଲା ନଦୀକୂଳ ।
ବଳିଆ ଗୋଡ଼ାଇ ଅଛନ୍ତି ଗଣ୍ଡାକୁ
ନାବ ଦେଖି ଦୁହେଁ ହୋଇଲେ ତେକୁ
ତେକୁ ।
ନଦୀର ଭିତରେ ଚରନ୍ତି ଜଳଚର
ହଂସ କାରଣ୍ଡକ ଚକୁଆ ଅପାର ।
କଣ୍ଠା ପାଣିକୁଆ ହଂସରାଳି ପକ୍ଷୀ
ବସା ଛାଡ଼ିଣ ଯେ ପଳାନ୍ତି ନାବ ଦେଖି ।
କେହୁ ତହିଁ ବୁଡ଼ି ରହନ୍ତି ବସା ଆଶେ
କେବଣ ଚଢ଼ାଇ ଯେ ରହିଲେ ଡିମ୍ଭ ଆଶେ ।
କେହୁ ତହିଁ ପରେ ଉଡ଼ନ୍ତି ରଡ଼ିଦେଇ
ନାବ ଗଲେଣ କେ ଦେଖନ୍ତି ବସା ଯାଇ ।
କେବଣ ଠାବରେ ଯେ ଅଛନ୍ତି ପଦ୍ମଲତା
ନଉକା ମାଡ଼ିଗଲା ନୋହିଲା ଦେଖନ୍ତା ।
ନାନା ପକ୍ୱଫଳ ଭୁଞ୍ଜନ୍ତି ଶାଳୀଅନ୍ନ
ନୃତ୍ୟ ଗୀତେ ହରଷେ ଦିନ ନିଅନ୍ତି
ଅନୁକ୍ଷଣ ।
ଗଭୀର ଜଳ ଦେଖି ନିଶାରେ ନାବ ଖାଞ୍ଜୁ
ପ୍ରଭାତେ ଚଳିଯାନ୍ତେ ନିଦ୍ରାରସ ବଞ୍ଚୁ ।

ଯେମନ୍ତେ କୋଡ଼ିଏ ଦିବସ ବହିଗଲା
କଉଶିକ ନଦୀ ତୀରେ ପ୍ରବେଶ ହୋଇଲା ।
ପଶ୍ଚିମକଇ ଉଭାରି ନାବ ବାହିଯାନ୍ତି
କେତେହେଂକ ଦୂରେ ଚାରିପର୍ବତ ଦେଖନ୍ତି ।
ତହୁଂ ଯାଇ ପ୍ରବେଶ ବିଭାଣ୍ଡେକର ସୀମା
ଯେବଣ ଥାନ ପୂର୍ବେ ଭିଆଇଲା ବ୍ରହ୍ମା ।
ଉତ୍ତର ଦିଗରେ ପଞ୍ଚକୋଶ ଗଲେ
ତେଇଶ ଦିନେ ମୁନି ସନ୍ନିଧେ ମିଳିଲେ ।
ପରିମଳ ଠାବ ଦେଖିଲେ ରହନ୍ତି
ନାବ ଖଟାଇଣ ସୁନ୍ଦେରୀ ଓହ୍ଲାବନ୍ତି ।
ଖୋଜିଣ ଜାଣିଲେ ଯେ ବିଭାଣ୍ଡେକ ଘର
ଅର୍ଦ୍ଧ କୋଶକ ସେ ଅଟଇ ନଦୀ ତୀର ।
ତହିଂ ରହିଲେ ଯେ ଉତ୍ତମ ସ୍ଥାନ ଦେଖି
ବିଚାର କରନ୍ତି ଯେ ଶରଦଚନ୍ଦ୍ର ମୁଖୀ ।
ବିଭାଣ୍ଡେକ ନଥିବା ଜାଣିଣ ଯେ ଯିବା
ସେ ମୁନି ଜାଣିଲେ ଶାପ୍ୟ ସେ ପାଇବା ।
ଯେଥୁ ଅନନ୍ତରେ ଗଲାକ ଦିନ ଚାରି
ବିଭାଣ୍ଡେକ ନଥିବାରେ ଜାଣିଲେ ଚତୁରୀ ।
କାମମୋହେନୀ କି ରାଇଣ ଜରତା
ସାଙ୍ଗରେ ପେଶିଲେ ସେ ବାରହ ବନିତା ।
ଅନେକ ମତେ ତାଙ୍କୁ ତିଆରି କହିଲା
ପ୍ରେମ ରସ ଗୁଣ ଅନେକ ଶିଖାଇଲା ।
ଯାଆଯା ସୁନ୍ଦେରୀ ଲୋ ରାଜକାର୍ଯ୍ୟ କର
ଯେମନ୍ତେ ଭଣ୍ଡି ହୁଅଇ ଋଷିର କୁମର ।
ଶୁଣିଣ ସୁନ୍ଦେରୀ ଯେ ଦିବ୍ୟ ବେଶ ହୋଇ
ଅଲେଖ ତିଲେଖ ଯେ ହୋଇଲେ
ଚାନ୍ଦମୁହୀଂ ।
ମୁକୁତା ସିଉସ୍ଥାନ ସେ ଉପରେ ପକାଇ ।
ଖୋଷା ଖୋଷିଲେ ସେ ଅନେକ
ଫୁଲଲାଇ ।
କେରି କେରି କରି ମଣ୍ଡିଲେ ଅଳକା
କସ୍ତୁରୀ ଚିତା ଘେନିଲେ ସୁନ୍ଦେରୀ
ନାୟେକା ।
କର୍ଣ୍ଣେଣ କାପ ଯେ ମୁକୁତା ଫେରି କମ
କାହାର କର୍ଣ୍ଣରେ ପଦ୍ମ ତଡ଼କି ଅନୁପାମ ।
ଯେକଗୋଟିଆ ଗଜମୁକୁତା ବେଣ୍ଟୋଲା
କେବଣ ବାମା ଶ୍ରବଣ ଶିଖରେ ଖଞ୍ଜିଲା ।
କାହାର ନାସାରେ ମାଣିକ୍ୟର ବସଣି
କାହାର ନାସାରେ ଲୁଳଇ ନୀଳମଣି ।
ପାଞ୍ଚ ଗଜମୋତି କାହାର ନାସାଫୁଲ ।
ତାମ୍ବୁଳ ରଙ୍ଗେ କାହାର ଅଧର ଅମୂଲ୍ୟ ।
କାହାର ଗଳାରେ ଲମ୍ବାନ୍ତି ଚାପସରି
ମୁକୁତା କଣ୍ଠିମାଳ ହୃଦରେ କେହୁ ଭରି ।
କେହୁ ଖଞ୍ଜନ୍ତି ଗଳେ ଯାଉଂଳି ସୁନା ସୂତା
କାହାର ହୃଦରେ ପଦେକ ମୁକୁତା ।
କାହାର ରତ୍ନିଆଳି ଲୁଳଇ ଉର ଯାଯେ
ମର୍କତ ତୋଡ଼ର କେ ଖଞ୍ଜି ନିଜ ପାୟେ ।
କେ ନେତ ପିନ୍ଧିଣ ଉପୁରାଣ ଦେଇ
କେ ରଙ୍ଗ ପତନୀ ଯେ ଆଭରଣ କରି ।
କେହି ଚତୁସମ କେହୁ କୁଂକୁମ ଘଷନ୍ତି ।
ଗଣ୍ଠିଅନା ଚନ୍ଦନ କେ ମିଶାଇ ଘେନନ୍ତି ।
କେ କରେଣ ଯନ୍ତ୍ର କେ ଧରିଲେ କରତାଳ
କେହୁ ସଜ ହୋଇଲା ଘେନିଣ ମର୍ଦ୍ଦଳ ।
କେହୁ ଚାମର କେହୁ ମୁଖ ଦରପଣ
କେହୁ ଭୁଜେ କରନ୍ତି ବିବିଧ ଆଭରଣ ।
କାହାର ହସ୍ତରେ ଦାରାକ୍ଷର ଫଳ
କେହୁ ପଣା କେହୁ ଘେନିଲେ ବାସ ଜଳ ।
କେହି ଦିବ୍ୟବସ୍ତ୍ର କେ ଘେନିଲେ ପୁଷ୍ପମାଳି
କେହି ଗନ୍ଧ ଚନ୍ଦନ କେ କର୍ପୂରର ଧୂଳି ।
କେ ସୁବର୍ଣ୍ଣର କଠାଉ କେ ସୁବର୍ଣ କମଣ୍ଡୁଳ

କେହୁ ଧୂପକାଠି କେ ଘେନିଲେ ତାମ୍ବୋଳ ।
କେ କରେଣ ପାଟଛତି କେ କରେଣ ଖଟୁଳି
କେ ରତ୍ନଝରି କେ ପାଟଇ ମୁଚୁଳି ।
ଅନେକ ସମ୍ଭାର ଯେ ଘେନିଣ ଯୁବତୀ
ଜରତାର ଆଜ୍ଞା ଘେନିଣ ଚଳିଯାନ୍ତି ।
ବେଳ ତିନି ଘଡ଼ିମାନେ ସେ ତହୁଁ ଚଳିଗଲେ
ପ୍ରହରକ ପ୍ରବେଶେ ଯାଇ ମୁନିଙ୍କି
ଦେଖିଲେ ।
ମଢ଼ିଆ ଦୁଆରେ ଯେ ଅଛଇ ବେଲଗଛି
ତହିଁର ତଳେ ବସି ଅଛଇ ମୁନି ବଛି ।
କୃଷ୍ଣାଜିନ ଛାଲ ସେ ପାଡ଼ିଣ ବ୍ରହ୍ମଚାରୀ ।
ବାମ ପାଖେ ଥୋଇ ଅଛଇ ଆଧାରି ।
ଛାମୁରେ ଅଛଇ ଶାଳଗ୍ରାମ ଶିଳା
ଗୋମଳ ପାଉଂଶ ଭୂଷଣ ମୁନିବଳା ।
କର୍ଣ୍ଣରେ ଅଛି ବେନି ତମ୍ବାର କୁଣ୍ଡଳ
କଣ୍ଠରେ ରୁଦ୍ରାକ୍ଷ ତୁଳସୀ କାଠମାଳ ।
ପଦ୍ମ ପୁଷ୍ପର ମାଳେକ କଣ୍ଠେ ଲୁଚି
ନବ ଯୁବା ପୁରୁଷ ଅପୂର୍ବ ତପଶାଳୀ ।
ଶୁଦ୍ଧ ସ୍ଫଟିକ ଯେ ଅଠାଇଶ ଗୋଟି
ଅକ୍ଷୟେ ମାଳା ଘେନି ଜପଇ ତପନିଷ୍ଠି ।
ଅଜପା ସୁମରଇ ଅନାମିକା ପଡ଼ି ।
ଛତିଶ କୋଟି ଯେ ଜପଇ ଏକ ଘଡ଼ି ।
ଶିରରେ ସୁନ୍ଦର ଦିଶଇ ଚାରୁ ଜଟ
ଶିଙ୍ଗ ଦୁଇଗୋଟି କି ଦିଶଇ ମୁକୁଟ ।
ତଲୟେ କରିଣ ଯେ ଅଛଇ ମହାମୁନି
ଯେସନେକ ସମୟେଣ ମିଳିଲେ କାମେନୀ ।
କାମମୋହେନୀ ଯାଇ ଓଳଗଇ ମୁନିପାଦ
ତାହାକଇ ମୁନି କରଇ ଆଶୀର୍ବାଦ ।
କନ୍ୟାଙ୍କର ରୂପ ମନୋହର ଦେଖି
ଉଠିଲେ ଋଷିପୁତ୍ର ଆସନ ଉପେଖି ।
କୃତାଞ୍ଜଳି ହୋଇ ବୋଲଇ ବିନୋଇ ।
ଜନ୍ମହୁଁ ଯୁବତୀ ଯେ ଦେଖିଲା ତାର ନାହିଁ ।
ପୁଚ୍ଛଇ ଋଷିଶୃଙ୍ଗ ଯୁବତୀଙ୍କି ଚାହିଁ
ଭୋ ତପୀଜନେ ଅଇଲ ତୁମ୍ଭେ କାହିଁ ।
କେବଣ ଦେଶୀ ତୁମ୍ଭେ କେବଣ ପ୍ରକାର
କେବଣ ବେଦବିଦ୍ୟା ଅଭ୍ୟାସ ତୁମ୍ଭର ।
କେବଣ ନଦୀ ତୀରେ ମଢ଼ିଆ କରିଥିଲ
କେବଣ କାରଣେ ତପୀ ଯେଥକୁ
ଯେବେ ଅଇଲ ।
କିସ ନାମ ତୁମ୍ଭର କେବଣ କୁଳେ ଜାତ
ଯେକ ଥାନେ ଥାଅ କି ସକଳ ତପୋବନ୍ତ ।
କାମମୋହେନୀ ବୋଇଲା ଋଷିର
କଥାଶୁଣି ।
ଆମ୍ଭର ଦେଶ ସ୍ୱାମୀ ଅଟଇ ଉଜାଣି ।
ନଖଦନ୍ତ ଆହୁତି ଦେଇତ ସର୍ବ ଜାଣୁ
ମଦନ ଅନଳେ ଯେ ରତିଶାସ୍ତ୍ର ଭଣୁ ।
କାମ କ୍ରୀଡ଼ା ରସ ଜାଣୁ ଯେ ଅପାର
ଚୁମ୍ବନ ଚାହାଣି ଯେ ପୀରତି ଆମ୍ଭର ।
ଧନ ଅର୍ଥେ ପରପୁରୁଷଙ୍କୁ ଖଟୁ
ମହା ମହତପୀଙ୍କି ହରି ତପ ବାଣ୍ଟୁ ।
ଇଚ୍ଛା ସୁଖେ ଆମ୍ଭ ସର୍ବପୁର ଯାଉ
ଦିବ୍ୟ ପୁରୁଷେକ ତହିଁ ପୂଜା ପାଉ ।
ପ୍ରୟାଗ ତୀର୍ଥେ ଆମେ ମକର ମାସେ
ଝାସିଲୁ
କୁମ୍ଭେ ଶିବରାତ୍ରୀ ବାଣରାଶିରେ କଲୁ ।
ଚଇତେ ଗଙ୍ଗା ଜଗନ୍ନାଥ ଘାଟେ
ବୈଶାଖେ ଅଇଲୁ ଯେ ହର ତପ ବାଟେ ।
ପ୍ରଥମ ଜ୍ୟେଷ୍ଠେ ଭେଟିଲୁ ଆସି ତୋତେ
ଅଯୋଧ୍ୟାକୁ ଯିବାର ଅଛଇ ଦିନା କେତେ ।
ଶୁଣି ଋଷିଶୃଙ୍ଗ ହରଷ ହୋଇଲା

ପାଦ ପଖାଳ ବୋଲି କମଣ୍ଡଳୁ ଦେଲା ।
ଶାର୍ଦ୍ଦୂଳଛାଲ ମୁନି ଦେଲା ଯେ ବସିତ
ଗୋମଳ ପାଉଂଶ ଗାତ୍ର ଭୂଷିତ ।
ହରିଡ଼ା ବାହାଡ଼ା ଅୟେଂଳା ଫଳ ଦେଲା
କନ୍ଦମୂଳ କିଛୁ ଉପଗତ କଲା ।
ହସିଣ ଚତୁରୀ ଯେ ବୋଲନ୍ତି ନାକମଳି
କିସ କିସ ପଦାର୍ଥ ଦେଲ ତପଶାଳୀ ।
ମୁନି ବୋଇଲେ ଯେ ଅଟଇ କନ୍ଦଫଳ
ପାଦେ ପଖାଳିତ ଦେଇଅଛୁ ଜଳ ।
ତୁମ୍ଭେ ଯେ ଅତିଥି ଅଇଲ ଆମ୍ଭ ଘର
ତପସ୍ଥାନେ ଯାଇ ଯେ ଅଛି ଆମ୍ଭ ପିଅର ।
ମୁହିଂ ବାଳୁତ ତନୁ ନଜାଣଇ କିଛି
ଭଗତି ହୋଇତ କି ମୋହର ବୁଦ୍ଧି ଅଛି ।
ତୁମ୍ଭେ ମହାତପୀ ପରମ ବ୍ରହ୍ମଜ୍ଞାନୀ
ମୁଂକି ସମ୍ଭାଳି ପାରିବି ଭୋ ମୁନି ।
ତୁମ୍ଭେ ସଦୟା ଯେ ଘେନିବା ମୋର ସେବା
ପ୍ରସନ୍ନ ହୋଇଣ ଯେହା ପରିଗ୍ରହ କରିବା ।
କାମମୋହେନୀ ବୋଲଇ ଶୁଣସି ହେ ଋଷି
ଯେ ସେ ଉପହାର ମୋହୋର ଆଖିକି ନ ଦିଶି ।
ହରତକୀ ଅୟେଂଳା ଆମ୍ଭେ କି ଯେହା ଖାଇ
ଯେକି କନ୍ଦମୂଳ ଖାଇଲେ କ୍ଷୁଧା ଯାଇ ।
ଯେହି ପାଣି ଖାଇଲେ କି ହରଇ ହାଦେ ତୃଷା
ବାହାଡ଼ା ଫଳ ଏତ ଲାଗଇ ବଡ଼ କଷା ।
ଯେହୁ ବନେ ଯେହି ଫଳ ଉପୁଜଇ
ଅଭାଗ୍ୟବନ୍ତ ଋଷି ଯେ ସେ ଯେ ଫଳ ଭୁଂଜଇ ।
ଆମ୍ଭର ବନ ଫଳ ଭୁଞ୍ଜ ମହାଯତି
ଦେଖ ହୋ ଆମ୍ଭର ତପର ଶକତି ।
ଆମ୍ଭର ବିପୁନ୍ୟର ଗଛର ବକଳ
ଆମ୍ଭ ପର୍ବତର ନିର୍ଝର ଯେହୁ ଜଳ ।
ଯେତେ ବୋଲି ନାରୀ ସୁବାସିଲା ପାଣି
ରତ୍ନ ଝରେ ଭରି ବେଗେ ଦେଲେ ଆଣି ।
ସନ୍ତୋଷେ ଋଷିପୁତ୍ର ପଖାଳିଲା ପାଦ
ଆଚମନ କରନ୍ତେ ମଣିଲା ସୁସ୍ୱାଦ ।
କାମମୋହେନୀ ଯେ ଘେନିଣ ଝିନବାସ
ଯେ ତରୁ ବକଳଟି ହୋ ବିଭାଣ୍ଡେକର ଶିଷ ।
ରଙ୍ଗରାଜ ନେତ ପୁଣ ହିଂ ବାଛିଲା
ଯେତେ ବୋଲି ମୁନି ଯେ ଶ୍ୟରୀର ପୋଛିଲା ।
କୁଙ୍କେ ଉଚ୍ଛିଣ ସେ ବୋଲଇ ମୁନି ପିନ୍ଧ
ଶ୍ୟରୀରେ ଆପଣେ ଯେ ଲେପିଲେ ଚାରୁଗନ୍ଧ ।
ରତ୍ନ କମ୍ବଳେକ ପାଡ଼ିଣ ତହିଂ ଦେଲା
ଯେ ସେ ପଶୁଚର୍ମ ବୋଲିଣ ବୋଇଲା ।
କର୍ପୂର ଗୁଣ୍ଡି ଅଙ୍ଗେ ଘଷାଇଲା ନେଇ
ଯେ ସେ ବିଭୂତି ମୁନି ଆମ୍ଭର ଦେଶେ ପାଇ ।
କର୍ଣ୍ଣରେ ଖଞ୍ଜିଲେ ହାଦେ ମକରକୁଣ୍ଡଳ
ଗଳାରେ ଲମ୍ବାଇଲେ ମୁକୁତାର ମାଳ ।
ବାହାରେ ତାଡ଼ ଯେ ବିଚିତ୍ର ବାହୁଟି
ପୟରେ ନୂପୁର ଯେ ଖଞ୍ଜିଲେ ପ୍ରପଟି ।
ଦୁଧ ଶାକର ବିବିଧ ପରକାର
ଆମ୍ବ ପନସ ସେ କଦଳୀ ଦିବ୍ୟସାର ।
ଯେ ସେ ବନଫଳ ବୋଲିଣ ଭୁଜାଇଂଲେ
ପୁଣିହିଂ ଗଙ୍ଗବାଣ ପାଣି ପିଆଇଲେ ।
ଶାକର ସାଚି ଚିଣି ଆବର ଖଣ୍ଡଖଜା
ହରଷେ ଭୁଞ୍ଜାଇ ଏହା ଋଷିର ତନୁଜା ।

ଦୁଧ ଲଡ୍ଡୁ ଖାଇ ପଚାରଇ ମୁନି
ବାବୁ ତପନିଷ୍ଠେ ମହିମା ତୁମ୍ଭ ଧ୍ୱନି ।
ଯେଡ଼େ ସ୍ୱାଦଫଳ ତୁମ୍ଭର ବନେ ଥାଇ
ଜାଣିଲି ତୁମ୍ଭର ସେ ତପସିଦ୍ଧ ହୋଇ ।
କେବଣ ବନ ତୁମ୍ଭର କେମନ୍ତ ଦେଖିବା
ଯେ ମୋହର ମନ ତୁମ୍ଭ ସଙ୍ଗେ ଯିବା ।

x x x

କର୍ପୂର ବାସ ଗୁଆ ଉତ୍ତମ ତାମ୍ବୋଳ
ଭୁଞ୍ଜିଣ ତପସ୍ୱୀ ଯେ ହୋଇଲାକ ଭୋଳ ।
ଶିରେ କୁସୁମ କଣ୍ଠେ ଉତ୍ତମ ତାମ୍ବୋଳି
ପୁଣି ଚନ୍ଦ୍ରସମ ଲେପିଲେକ ବାଳୀ ।
କେବଳ ବିଳାସୁଣୀ ବିଞ୍ଚନ୍ତି ବିଞ୍ଚଣୀ
ଚାମର ଢାଳନ୍ତି କେବଣ ତରୁଣୀ ।
କେହୁ ପାଟଛତ୍ର ଉଭାରିଲା ଶିରେ
ପୁଣି ବସାଇଲେ ରତ୍ନ ଖଟୁଲି ଉପରେ ।
ଓଂକାର ଆଳାପ କରିଣ ଗୀତ ଗାଇ
ଅତି କୋମଳ ରାଗେ କେଦାର ଉଚ୍ଚାରଇ ।
ବୀଣା ଯନ୍ତ୍ର ଘେନି ବଜାଇଲେ ମର୍ଦ୍ଦଳ
କେହୁ କରତାଳ ବାଇ କେ ବଜାନ୍ତି କଂସାଳ ।
ମଧୁକେରୀ ରାଗେ କେ ପ୍ରବନ୍ଧେ ଗୀତ ଗାଇ
ମୁନିଙ୍କ ମୁଖ ଚାହିଁ ନୃତ୍ୟ କେ କରଇ ।
କେ ଧୂପକାଠି ଘେନିଣ ଉଭା ହୋଇଛନ୍ତି
କେହି ରତ୍ନ ପାଦୁକା ନେଇ ପାଦେ ଦ୍ୟନ୍ତି ।
କେବଣ ସୁନ୍ଦରୀ ଯେ ଦର୍ପଣ ଦେଖାଇଲେ
ଯେଥି ମୁନି ମୁଖ ଚାହାଂସି ବୋଇଲେ ।
କାମମୋହେନୀର କୋଳ ବସି ଯତି
ପରମ ହରଷେଣ ଦର୍ପଣ ନିରୋପନ୍ତି ।
ଦେଖିଲାକ ମୁଖ କସ୍ତୁରୀ ଚାରୁ ଚିତା
କର୍ଣ୍ଣର କୁଣ୍ଡଳ ଯେ ସୁନ୍ଦର ଭ୍ରୂଲତା ।
କଣ୍ଠେଣ ହାର ଯେ ଶିରରେ ଫୁଲ ଗଭା
ମଦନ ପ୍ରତିମା ଠାଣି ଦିଶଇ ମୁନି ଶୋଭା ।
ଆପଣାର ମୁଖ ଦେଖି ମୁନି ମୋହମାନ
କାମମୋହେନୀ କି ବୋଲଇ ବଚନ ।
ଯେଡ଼େ ଅପୂର୍ବତ ଦେଖିଲା ମୋର ନାହିଁ
ଆପଣା ଶରୀର ରୂପ ସମସ୍ତ ଦିଶଇ ।
ସାଧୁ ସାଧୁ ତୁମ୍ଭେ ସାଧୁ ତୁମ୍ଭର ପୁଣ୍ୟ
ଯୁବତୀଙ୍କ ମୁଖ ଚାହିଁ ବୋଲନ୍ତି ମହାମୁନ୍ୟ ।

x x x

କାମମୋହେନୀକି ବୋଇଲାକ ହସି
ତୁମ୍ଭର ଆଶ୍ରମେ ଆସିବୁ ଆମ୍ଭେ ପଶି ।
ଚାଲଯିବା ଆମ୍ଭେ ଦେଖିବା ମନ୍ଦିର
ଯେତେକ ବୋଲିଣ ଯେ ଉଠିଲେ ମୁନିବର ।
ନୃତ୍ୟ ଗୀତ ରୁହାଇ ବୋଲଇ କାମମୋହେନୀ
ଆଜ ନଯିବା ତୁମ୍ଭେ ଶୁଣ ତପୋଧନୀ ।
ଯେବେ ଆମ୍ଭେ ଯିବୁ ଦେବତା ପୂଜାକରି
ଆହାର୍ଣ୍ଣିକ ବେଳ ଯେ ହୋଇଲା ତପଚାରୀ ।
କାଲି ଆସି ତୋହୋର ଗଲେ ଘେନିଯିବୁ
ଯେ କଥା ସତ୍ୟ ସତ୍ୟ ଅବଶ୍ୟ କରିବୁ ।

x x x

ଦୂରୁହୁଁ ଦେଖିଣ କାମମୋହେନୀ ବୋଇଲା ।
ଦେଖ ଦେଖ ଜରତା ଗୋ ଋଷିଶୃଙ୍ଗ ଅଇଲା ।
ଅନେକ ରସ ତହିଁ ଉପୁଜିଲା କାଲି
ମୁରୁଛି ନପାରିଲା ଅଇଲା ମୁନି ଭୁଲି ।
ନିକଟ ହୁଅନ୍ତେଣ ବୋଲଇ ବ୍ରହ୍ମଚାରୀ
ବାରହ ବନିତାୟେ ଚରଣେ ଯାଇ ପଡ଼ି ।
ଋଷିଶୃଙ୍ଗ ବୋଇଲେ ଶୁଣ ତପସ୍ୱିନୀ
ଯେ ମୋତେ ଅକଲ୍ୟାଣ ଅଟଇ ମହାମୁନି ।

ତୁମ୍ଭେ ପୁଣ୍ୟଦେହୀ ରୂପେଣ ଗରୁହଂସୀ
ମୁହିଂ ବାଳୁତ ଯେ ଅଟଇ ତୁମ୍ଭର ଶିଷି ।
ମହତଙ୍କ ସଙ୍ଗେ ପୀରତି ଥିବା ଅର୍ଥେ
ଆରତ ହୋଇଲି ଅଇଲଇଂ ଯେଥେ ।
ପିତା ମୋହୋର ବହୁତ ତିଆରିଲେ ଆସି
ବୋଇଲେ ବାବୁରେ ସେ ଅଟନ୍ତି ରାକ୍ଷାସୀ ।
ତାହାକୁଇଂ ପରତେ ନଯିବୁ ବାଳପୋଇ
ତାହାଙ୍କର ପରସାଦେ ତପନାଶ ଯାଇ ।
ଅନେକ ତିଆରିଣ ଗଲେ ମୋର ତାତ
ମୁହିଂ ତାହାଙ୍କର ବୋଲ ନକଲି ଗ୍ରାହିତ ।
ତୁମ୍ଭଙ୍କ ନଦେଖି ମୋର ଚିତ୍ତ ଥଏ ନାହିଂ
ସପନେ ତୁମ୍ଭ ସଙ୍ଗତେ ଥିଲି ଆଜ ମୁହିଂ ।
ବାବୁ ମହାତମା ତପ ତୁମ୍ଭର ସାର
ବଶ୍ୟ ହୋଇଲି ଦେଖି ତୁମ୍ଭର ଆଚାର ।
କାମମୋହେନୀ ବୋଲଇ ଶୁଣ ମହାମୁନି
ତୋହୋର ଆଗେ ଉଭା ଯେବଣ
କାମେନୀ ।
ଯେ ଆମ୍ଭର ମୋକ୍ଷ ଜରତାକୋଷା ନାମ
ତପେଣ ମନାଇଲା ପଞ୍ଚଶର କାମ ।
ଯେହାକଇ ପ୍ରୀତି ହୁଅ ମହାମୁନି
ସାକ୍ଷାତ ରୂପବନ୍ତୀ ଯେ ମଦନ ରସଦାନୀ ।
ଶୁଣିଣ ଋଷିଶୃଙ୍ଗ ଜରତାକଇ ଚାହିଂ
ଅଳସ ଦୃଷ୍ଟିରେ ସେ ଅଛଇ ଉଭା ହୋଇ ।
ମୁନି ମୁଖ ଚାହିଂ ସେ ଅଳପ ହସିଲା ।
ଚରଣ ଜ୍ୟେଷ ଅଙ୍ଗୁଳି ଭୂମିରେ ଘଷିଲା ।
କର ପ୍ରସାରିଣ ଧଇଲା ମୁନି ହସ୍ତ
ବୋଇଲା ସୁଦୟା ମୋତେ କରିବ
ତପୋବନ୍ତ ।
କାମମୋହେନୀ ଯେ ବିଞ୍ଚଇ ବିଞ୍ଚଣୀ
ଚାମର ଢାଳନ୍ତି ଯେ କେବଣ ତରୁଣୀ ।

କରେ ପାଟଛତ୍ର କେ ତୋଳିଣ ଧରନ୍ତି
କେ ପାଦେ ପାଦୁକା ନେଇଣ ଯୋଚାନ୍ତି ।
ମୁନି ବୋଇଲେ ଧନ୍ୟ ତୁମ୍ଭର ଦେବ ପୂଜା
ରଖିଅଛି ତୁମ୍ଭକୁ ଧନ୍ୟ ସେହୁ ରାଜା ।
କେବଣ ପୁନ୍ୟ କୁଟୀରେ ଥାଅ ତୁମ୍ଭେ
ରହି
କାମମୋହେନୀ କହିଲା ଅଙ୍ଗୁଷ୍ଠି ଦେଖାଇ ।
ଯଦି ଦୟା ତୋର ଅଛି ତପଶାଳୀ
ଆଜ ଆମ୍ଭର ପାପ ହୋଇଲା ପଖାଳି ।
ଯେ ତୋହୋର ପବିତ୍ର ଚରଣ ଯୁଗଳ
ଯେଣେ ସେ ମଡ଼ିଆ ଆମ୍ଭର ହୋଇବ
ସୁଫଳ ।
ବିଚାରେ ଯୋଗାଇଲେ ଦେଖିବା ଦେବ ପଣି
ଚାଲଯିବା ବୋଲି ବୋଇଲେ ମହାଋଷି ।

X X X

କାମମୋହେନୀ କି ଜରତା ଦେଲା ଠାରି
ଆଡ଼ ହୋଇଲେ ସେ ନିକ୍ଷଳ ଟେରାପାଡ଼ି ।
ଚାପେଣୀ କାଟି ତକ୍ଷଣେ ନାବ ମେଲି
କୂଳେ ଥିଲା ଲୋକେ ବେଗେ ଦେଲେ
ପେଲି ।
ଧାତିକାରେ କଇବ୍ରତ ବାହିଦେଲା ନାବ
କେହି ନଜାଣଇ ଚଳିବାର ଠାବ ।
ଜରତା କନ୍ୟା କୋଳେ ଅଛଇ ମୁନି ବସି
ସୁନ୍ଦେରୀ ମୁନିଙ୍କି କଥା କହଇ ହସି ।

X X X

ଯେକ ଆରେକ ସେ ପାଲଟିଆ ହୋଇ
ମୁନି କୁମାରଙ୍କୁ ଅଛନ୍ତି ନାରୀ ମୋହି ।
ରାତ୍ରେଣ ଦୀପ ଦିହୁଡ଼ି ହୁଳା ଧରି
ରଜନୀ ଦିବସ ଏକତ୍ୱ ପ୍ରାୟେ କରି ।
କ୍ଷଣକେ କାମମୋହେନୀ କ୍ଷଣକେ ଜରତା

କ୍ଷଣକେ ଖଟିଥାନ୍ତି ବାରହ ବନିତା ।
ହେଠ ସ୍ରୋତେ ନାବ ଚଳାଇ ଅତିବେଗେ
ଚମ୍ପାବତୀ ନଗ୍ରେ ଯାଇଣ ସେ ଲାଗେ ।
ଯିବାର ବେଳେଣ ଯେ ତେଇଶି ଦିନେ ଗଲେ
ବାର ଦିବସେଣ ବାହୁଡ଼ି ଅଇଲେ ।
ତହିଂ ପାଞ୍ଚଦିନ ରହିଲେ ସୁନ୍ଦେରୀ
ଚାଳିଶି ଦିନେ ହେଲା ଚମ୍ପାବତୀ ପୁରୀ ।
ନଦୀର ଘାଟେ ସେ ଲାଗିଲା ନାବ ଯାଇ
ଜରତା କୋଳରେ ଅଛଇ ମୁନି ଶୋଇ ।
ଏକେଣ ଯତି ସେ ଶୃଙ୍ଗାରେ ଶ୍ରମ ପାଇ
ନାବ ଚଳିବାରେ ଉଷୁମ ଭାବ ବହିଂ ।
ନାବର ଭିତରେ ଯେ ଅଛଇ ଚେରା ପଡ଼ି
ରତ୍ନପଲଙ୍କେ ମୁନି ଅଛନ୍ତି ପହୁଡ଼ି ।
ମୁନି ବିଚାରଇ ଶରୀରେ ମୋର ତାପ
ପାଇବା କି ଜରତା ଗୋ ନିର୍ଝରର ଆପ ।
କର ଦୁଇ ଯୋଡ଼ିଣ ବୋଲଇ ଯୁବତୀ
ଯେସେ ନଗ୍ର ଦେବ ଅଟଇ ଚମ୍ପାବତୀ ।
ଲୋମପାଦ ରାଜା ବ୍ରାହ୍ମଣଙ୍କୁ ଦ୍ରୋହ କଲା
ସେ ଦୋଷେ ଯେ ନଗ୍ରେ ଇନ୍ଦ୍ର ନପାଳିଲା ।
ନିର୍ଝର ଆପ ପାଇବା ଯେଥି କାହିଂ
ନଦୀ ସେ ନବହି ଯେ ପୋଖରୀରେ ପାଣି ନାହିଂ ।
ଦ୍ୱାଦଶ ବର୍ଷ ଯେ ଇନ୍ଦ୍ର ନକଲାକ ବୃଷ୍ଟି
ଜଳ ବିହୁନେଣ ବିକଳ ହୋଏ ସୃଷ୍ଟି ।
ରାଜା ଆରତେଣ ଅନେକ ଧର୍ମ କଲା
ଜଳ ତପ କରାଇ ଅତିଥିନ୍ତ ବରିଲା ।
ବାରୁଣୀରେ ହୋମ କରନ୍ତି ସୁଗ୍ୟଂ ଦ୍ୱିଜ
ପାଣି ପଣା ଦାନ ଦେଲାକ ମହାରାଜ ।
କେବେହେଂ ବୃଷ୍ଟି ନକରିଲା ସୁରପତି
ଅପାର ଚିନ୍ତା ଯେଥେ ପାଇଲା ନୃପତି ।
ରାଜାର ଭାଳନ୍ତେଣ ପୁଣ ବ୍ରାହ୍ମଣ ବରଦେଲେ
ଋଷିଶୃଙ୍ଗ ଅଇଲେ ଯେଥି ବରଷିବ ବୋଇଲେ ।
ଶୁଣିଣ ହରଷ ଯେ ହୋଇଲେ ମହୀପାଳ
କେମନ୍ତେ ଆଣିବି ମୁଁ ବିଭାଣ୍ଡେକର ବାଳ ।
ମନ୍ତ୍ରୀର ବଚନେ ସେ ପେଷିଲାକ ମୋତେ
ଶୁଭ ଯୋଗେ ଯାଇଂ ଯେ ଭେଟ ମୁହିଂ ତୋତେ ।
ପ୍ରସନ ହୋଇଲୁ ତୁ ମୋହର ଭାବ ଘେନି
ନାବରେ ବସାଇ ତୋତେ ଆଣିଲୁ ତପୋଧନି ।
ମୁହିଂ ବେଶ୍ୟା ନାରୀ ଅଟଇ ନଟ ଜାତି
ନୁହଇ ପୁରୁଷ ନୁହଇଂ ମୁହିଂ ଯତି ।
ବାରହ ବନିତାଯେ ପଡ଼ିଲେ ବିକଳେ
ମୁନିର ପାଦତଳେ ପଡ଼ି ବୋଲନ୍ତି ସକଳେ ।
ନକର କୋପ ମୁନି ନଦିଅ ଆମ୍ଭକୁ ଶାପ
ସ୍ୱାମୀର ଆଜ୍ଞାରେ ଯେ ଆମ୍ଭେ କଲୁ ଯେତେ ଧାପ ।
ଜଳ ବୃଷ୍ଟି ନୋହିଲେ ତ ଜଗତ ଜନ୍ତୁ ମରି
ତେଣୁ ସେ ଆଣିଲୁ ଦେବ ପ୍ରାଣକୁ ନଡରି ।
ଯେଣେ ସେ ଦେବ ଶୀତଳ ପାଣି ନାହିଂ
ଯେ ଆମ୍ଭର ଦୁଃଖ ଘେନ ତପସାଇଂ ।
ଶୁଣିଣ ମହାମୁନି ଯେ ତ୍ରିପୁତି ହୋଇଲେ
ଉଠ ଉଠ ଯୁବତୀ ଗୋ ବୋଲିଣ ବୋଇଲେ ।
ସକଳ ଦୋଷ ତୁମ୍ଭର କଲୁ ଆମ୍ଭେ କ୍ଷମା
ଆମ୍ଭନ୍ତ ସୁରତି ଦେଇ ତୋଷିଲରେ ବାମା ।

ହୋଇଲୁ ପ୍ରସନ୍ନ ଆମ୍ଭେ ଉଠ ଉଭା ହୋଅ
ହରଷ ମନେ ସଖି ହସିଣ କଥା କହ ।
ଶୁଣିଣ ସୁନ୍ଦରୀ ଯେ ଭୟ ତେଜି ଉଠି
କରପତ୍ର ଯୋଡ଼ି ଉଭା ହୋଇଲେ
ବିମ୍ବୋଷ୍ଠୀ ।
ମୁନି ବୋଇଲେ ଯେଥେ ନାହିଁ ଯେବେ
ଜଳ
ବୃଷ୍ଟି କର ବୋଲି ବୋଇଲେ ତପଶୀଳ ।
ତୁମ୍ଭର ସୀମା ହାଦେ ଅଟଇ ଯେତେ ଦୂର
ଯେତେବେଳେ ଇଚ୍ଛା ବରଷିବ ଜଳ ।
ଋଷିର ମୁଖୁ ହାଦେ ଏସନ ବାକ୍ୟ ଶୁଣି
ମେଘକୁ ହକାରି ବୋଇଲା ବଜ୍ରପାଣି ।
ଲୋମପାଦ ରାଜ୍ୟେ ଯେତେକଟି ଦେଶ
ବୃଷ୍ଟି କର ବୋଲି ଦେଲାକ ଆଦେଶ ।
ତତକ୍ଷଣେ ଆବର୍ତ୍ତକ ସାମ୍ବର୍ତ୍ତକ ଦ୍ରୋଣ
ପୁଷ୍କର ସହିତେ ଆଚ୍ଛାଦିଲା ଯେ ପୟାଣ ।
ବିଜୁଳି ଘଡ଼ଘଡ଼ି ପବନ ଯୁଗତେ
ଆକାଶେ ମେଘ ଯେ ଦେଖିଲେ ସମସ୍ତେ ।
କି ଯେ ଅପୂର୍ବ କେବଣ କଥା ହୋଇ
ଯେତେ ବୋଲି ଲୋକେ ଉର୍ଦ୍ଧକଇ ଚାହିଁ ।
ଦେଖୁ ଦେଖୁ ବୃଷ୍ଟି କଲାକ ଅତି ଘୋର
ନିରନ୍ତରେ ବୃଷ୍ଟି ଯେ ଅଖଣ୍ଡିତ ନୀର ।
ରାଜ୍ୟର ଲୋକେ ଦେଖି ହରଷ ମୁଖ ହୋଇ
ଅତି ଆନନ୍ଦେଣ ହୁଅନ୍ତି କୁହାକୁହି ।
ଇନ୍ଦ୍ର ଯେବେ ବୃଷ୍ଟି କଲା ହୋଇଲା ସୁଫଳ
ପ୍ରବେଶ ହୋଇଲା ଆସି ବିଭାଣ୍ଡେକ ବାଳ ।

x x x

ରାଜା କର ଯୋଡ଼ିଣ ଛାମୁରେ ଉଭା ହୋଇ
କୃତାଞ୍ଜଳି ହୋଇ ବିନୟ କରସାଇଁ ।
ଋଷିଶୃଙ୍ଗ ଯାଇଂ ବିଜୟେ ଖଟଦୋଳି
ଚାମର ଆଲଟ ତହିଁ ମନ୍ତ୍ରୀଗଣେ ଢାଳି ।
ରାଜାର ମୁଖ ଚାହିଁ ପଚାରଇ ଋଷି
ତୁ ହୋ ଲମ୍ବପାଦ ଚମ୍ପା ନଗ୍ରବାସୀ ।
କ୍ଷେମେଣ ପାଳୁନା ସକଳ ଜନପ୍ରଜା
ସୁକ୍ଷେଣ ବୃତି ଅଛୁନା ମହାରାଜା ।

x x x

ଜଳ ବୃଷ୍ଟି ହୋଇବାରେ ସକଳ ଦୁଃଖ ଗଲା
ଋଷି ପାଦେ ପଡ଼ି ନୃପତି ବୋଇଲା ।
ଉଠ ଉଠ ରାଜା ହୋ ବୋଲଇ ତପଚାରୀ
ଜରତାକୁ ଚାହିଁ ବୋଲଇ କର ଯେ
ପ୍ରସାରି ।
ଯେହାକୁ ଗଉରୋବ କର ହୋ ନୃପତି
ଯେହାଙ୍କର ସୁଷ୍ଠ ତୁ ହୋଇଲୁ ଚକ୍ରବର୍ତ୍ତୀ ।

x x x

ନିଅବକାଶ ବେଳ ସକଳ ମହାଦେଈ
ମୁନିକି ଦର୍ଶନ କଲେ ତହିଁ ଯାଇ ।
ଜରତା ଜଣାବଇ ଶୁଣ ମହାଯତି
ଲୋମପାଦ ରାଜାର ଯେ ଅଟନ୍ତି ଯୁବତୀ ।
ଶୁଣିଣ ତପଚାରୀ କଲ୍ୟାଣ ସେ କଲା
ଶତେକ ତନୟ ତୁମ୍ଭର ହୋଉ ଯେ
ବୋଇଲା ।
ରାଜା ସନ୍ତୋଷ ମହାଦେଈଙ୍କ କହନ୍ତେ
ଚମ୍ପାବତୀ ନଗ୍ରେ ଆନନ୍ଦ ସମସ୍ତେ ।
ନିଧନେ ଧନେ କି ସେ ଅନ୍ଧ ଚକ୍ଷୁ ଦାନ
ଅପୁତ୍ରିକେ ପୁତ୍ର ଅପାବନେ ପାବନ ।
ଋଷିଶୃଙ୍ଗ ପ୍ରସାଦେଣ ରୋଗ ଶୋକ ତେଜି
ନିଶ୍ଚିନ୍ତ ହୋଇଲେ ସେ ଲୋମପାଦ
ରାଜି ।



# ପୁତ୍ରେଷ୍ଟି ଯଜ୍ଞ ଓ ଶ୍ରୀରାମ ଜନ୍ମ

ଶଙ୍କର ବୋଲନ୍ତି ଯେ ପାର୍ବତୀ ମୁଖ ଚାହିଁ
ଶ୍ରୀରାମ ଚରିତ୍ର ଗୋ କହଇ ତୋତେ ମୁହିଁ ।
ଦଶରଥ ନୃପତି ଯଜ୍ଞ ଆଚରିଲେ ବ୍ରତ
ଦୀକ୍ଷା ଘେନିଲେ ତାହାର ମହାଦେଈ
ସମସ୍ତ ।
ଋଷିଶୃଙ୍ଗ ଆପଣେ ଶୁଚିବନ୍ତ ହୋଇ
ତପ ଆଚରିଲା ଯୁବତୀ ନ ଛୁଇଁ ।
ଯଜ୍ଞେ ପ୍ରବେଶ ଯେ ବ୍ରହ୍ମଋଷି ମୁନି
ଅଜପା ଗାୟତ୍ରୀ କହଇ ମହାମୁନି ।
ବ୍ରାହ୍ମଣ ବରଣ ସେ କଲେ ଜଣ ଚାରି
ବ୍ରହ୍ମା ବରଣ ସେ ଗଉତମ ଋଷିକି
କରି ।
ଚେବନ ମହାଋଷି ନେଲେ ସୂତ୍ର ଦୀକ୍ଷା
ଅଷ୍ଟବକ୍ର ହୋତା ଅଧର୍ଯ୍ୟୁ ପୌଲସ୍ତିର ବଛା ।
ଏମନ୍ତ ପ୍ରକାରେ ସପତ ଜଣ ବରି
କୁଣ୍ଡଳ ବିଦ ମୁଦି ବିଚିତ୍ର ପରିହରଣ କରି ।
ଋଷିଶୃଙ୍ଗ ମୁନି ଯାଗରେ ଆଚାର୍ଯ୍ୟ
ମାରକଣ୍ଡ ଋଷି ହୋଇଲେ ଋତ୍ୱିଜ ।
ଅଗ୍ନି ସ୍ଥାପିଣ ସେ ବେଦ ମନ୍ତ୍ର ପଢ଼ି
କୁଶ ପଲାଶ ସମିଧ ଯୋଡ଼ି ଯୋଡ଼ି ।
ଯବଧାନ ଗୁଆ ନଡ଼ିଆ ଦୁଧ ଘୃତ
ତିଳ ସୁବର୍ଣ୍ଣ କୃଷ୍ଣ ବର୍ଣ୍ଣ ପାତ୍ର ।
ଯେ ବିଧି ଯଜ୍ଞ କରନ୍ତି ତପଚାରୀ
ଚନ୍ଦନ କୁସୁମ ଗନ୍ଧ ସଜ କରି ।

ଯେବଣ ଦେବତାକୁ ଯେବଣ ମନ୍ତ୍ରେ ପୂଜା
ଧୂପଦୀପ ସମିଧ ଦିଅନ୍ତି ବିପ୍ରଦ୍ୱିଜା ।
ବାଦ୍ୟ ବାଜଇ ବିବିଧ ବନେ ତୂର
ଅତିହିଁ ଗହଳ ଯେ ଉଛବ ନଗ୍ରପୁର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଆନନ୍ଦ ତିନିପୁର ଲୋକ
ଯେଣେ ସୁରଗଣେ ତେଜିବେ ଚିର
ଶୋକ ।
ପାଞ୍ଚଦିନେ ଯାଗ ହୋଇଲା ସମାପତ
ପୂର୍ଣ୍ଣ ଆହୁତି ଦିଅନ୍ତି ସକଳ
ତପୋବନ୍ତ ।
ଯହୁଁ ଋଷିଶୃଙ୍ଗ ଦେଲାକ ଆହୁତି
ସର୍ବଦେବ ଘେନି ଅଇଲା ବେଦପତି ।
ନବଗ୍ରହ ଯେକାଦଶ ରୁଦ୍ର ଆୟେ
ଅଷ୍ଟବସୁ ଦଶ ଦିଗପାଳ ଯାୟେ ।
ସର୍ବ ଦେବତାଏ ମୂର୍ତ୍ତିବନ୍ତ ହୋଇ
ହବି ଭୁଞ୍ଜନ୍ତି ଯେ ପରମ ସୁଖ ପାଇ ।
ବ୍ରହ୍ମା ସହିତେଣ ସକଳ ଦେବ ଦେଖି
ଋଷିଶୃଙ୍ଗ ଉଠିଲେ ଆସନ ଉପେଖି ।
ଶ୍ରୁହା ପ୍ରୋକ୍ଷଣି ଛାଡ଼ି ମହାଯତି
କର ଯୋଡ଼ିଣ କରଇ ଅନେକ ସ୍ତୁତି ।
ଧନ୍ୟ ମୋର ପୁଣ୍ୟ ଧନ୍ୟ ମୋର ତପ
ପ୍ରତ୍ୟକ୍ଷେ ଦେଖିଲି ମୁଁ ସୁରଗଣଙ୍କ ସ୍ୱରୂପ ।
ଦଶରଥକୁ କଲ୍ୟାଣ ସମସ୍ତେ ଯେବେ କର
ପୁତ୍ରବନ୍ତ ହଉ ଅଯୋଧ୍ୟା ନୃପବର ।

ଯେ ମୋହର ଯଶ ରହୁ ଯେହାର ତହିଂ
ଧର୍ମ ଆଶ୍ରେକେ ପୁତ୍ର ଲଭୁ ନରସାଇଂ ।
ମନ୍ତ୍ରବଳ ତପବଳ ଧର୍ମବଳ ତିନି
କଥା ବ୍ରତିଥାଉ ଯାବତ ମେଦିନୀ ।
ତୁମ୍ଭେ ସୁର ଯେବେ ହୋଇଲ ସନ୍ତୋଷ
କର ଅନୁଗ୍ରହ ହାଦେ ରହୁ ସୂର୍ଯ୍ୟବଂଶ ।
ଯେତେ ବୋଲି ମୁନି ପ୍ରଳମ୍ଭ କରି ଶୋଇ
ଯେସନେକ ସମୟେ ବାସୁଦେବ ଯାଇ
ହୋଇ ।
ଦେଖି ସୁରଗଣେ ବିଷ୍ଣୁଙ୍କୁ ସ୍ତୁତି କଲେ
ଜୟ ଜୟ ପରମଈଶ୍ୱର ବୋଇଲେ ।
ଜୟ ତୁ ନାରାୟଣ ଜୟ ମଧୁହାରି
ଜଗତ ନିସ୍ତାରଣ ଜୟ ଜଗଜ୍ଜନ ବେହାରି ।
ପରମପୁରୁଷ ବ୍ରହ୍ମ ସର୍ବଜୀବ ଅନ୍ତର୍ଯ୍ୟାମୀ
ନମୋ ପୁରୁଷୋତ୍ତମ ପରମାନନ୍ଦ ସ୍ୱାମୀ ।
ସଂସାର ତାରଣ ଯେ ସୁରଗଣ ନାଥ
ଅପାର ମହିମା ଦେବ ଶଙ୍ଖ ଚକ୍ର
ହସ୍ତ ।
ଶ୍ରୀବଚ୍ଛ ଲକ୍ଷଣ ଯେ କିରୀଟ କୁଣ୍ଡଳ
କଣ୍ଠେ କଉସ୍ତୁଭ ମଣି ଆଦିତ୍ୟ ମଣ୍ଡଳ ।
କଟିରେ ପୀତବାସ ବାହେଣ ବିଦ ମୁଦି
ହୃଦରେ ବନମାଳା ବିଜୁଳି ପ୍ରସିଦ୍ଧି ।
ଆରତଭଞ୍ଜନ ଦେବ ଭଗତବଛଳ
ଶରଣରକ୍ଷଣ ସ୍ୱାମୀ ଅସୁରକ୍ଷୟକାଳ ।
ଶ୍ରୀବନ୍ତ ପୁରୁଷ ତୁ ଶ୍ରୀହରି ଜଗଦ୍ରମିତ୍ର
ଶ୍ରୀ ନାରାୟଣ କେଶବ ମାଧବ ଅଚ୍ୟୁତ ।
କର କରୁଣା ଦେବ ଅପାର ମହିମା
ଯେସନେକ ବୋଲି ସ୍ତୁତି କଲା ବ୍ରହ୍ମା ।
ଶ୍ରୀହରି ବୋଇଲେ ହୋ କରିବି କିସ କାର୍ଯ୍ୟ
କିମ୍ପା ସ୍ତୁତି କଲ କହ ବିପ୍ରରାଜ ।

ବିଧାତା ବୋଇଲେ ତୁମ୍ଭେ ଶୁଣ ଦେବସ୍ୱାମୀ
ଜଗୁଜନ ହୃଦେ ତୁ ସେ ଅନ୍ତର୍ଯ୍ୟାମୀ ।
ଉତପତି ସ୍ଥିତି ପ୍ରଳୟ କରନ୍ତା
ତୋ ତହୁଂ ଆନ କେ ସୃଷ୍ଟି ଉଧରନ୍ତା ।
ତୋହୋର ପ୍ରସାଦେ ଆମ୍ଭେ ସୁସ୍ଥ ଥାଉ
ତୋହୋର ଅଦୟାରେ ସୃଷ୍ଟି ରହିବ କାହୁଂ ।
ତୁହି ସେ ଠାକୁର ଆମ୍ଭେ ସବୁ ଭୃତ୍ୟ
ଭୃତ୍ୟକଇ କାରେଣୀ କର
ଶଙ୍ଖଚକ୍ରହସ୍ତ ।
ଶୁଣ ଦେବ ବ୍ରହ୍ମାଣ୍ଡନାୟେକ ମୁରାରି
ହେତି ପ୍ରହେତି ବୋଲି ପୂର୍ବେ ଦୁଇ ଦଇତ
ଅବତରି ।
ସୁକେଶା ନାମେଣ ଯେ ତାହାଙ୍କର ପୁତ୍ର
ବଡ଼ାଇ ଧାର୍ମିକ ସେ ଅଟଇ ତପୋବନ୍ତ ।
ସେ ସେ ମହାତମା ପାପପୁଣ୍ୟଜ୍ଞାନୀ
ନ୍ୟାୟବନ୍ତ ପଣେ ସାମାନ୍ୟ ମହାମୁନି ।
ତାହାର ତନୟ ସେ ବିଦ୍ୟୁତକେଶା ହୋଇ
ପ୍ରତାପୀ ପଣେ ତାଙ୍କୁ ସାମାନ୍ୟ ନାହିଁ କେହି ।
ତାହାର ତିନିପୁତ୍ର ହୋଇଲାକ ଜାତ ।
ମାଳି ସୁମାଳି ଯେ ଆବର ମାଲ୍ୟବନ୍ତ ।
ଦୁଷ୍ଟପଣ କରି ଧର୍ମ ଜିଘାସିଲେ
ତପୀ ଜପୀ ମାରି ବ୍ରାହ୍ମଣ ନାଶିଲେ ।
ପରଦେଶ ପରନାରୀ ହରିଲେ ପରଧନ
ତୁ ତାହା ଚକ୍ରଧରି କଲୁ ନିଶୋଧନ ।
ମାଳି ମାଲ୍ୟବନ୍ତ ମଲେ ଯେ ତୋର ହସ୍ତେ
ଡରେ ପଳାଇଲା ସୁମାଳି ନାମେ ଦତ୍ୟେ ।
ବଳ ଘେନିଣ ଯେ ପାତାଳେ ଯାଇ ଲୁଚି
ନଉକେଶୀ ନାମେ ଝିଏକ ତାର ଅଛି ।
କାଳେଣ ତାହା ବିଶର୍ବା ଋଷିଙ୍କି ବିଭାକଲା
ମୁନିର ବୀର୍ଯ୍ୟେ ତିନିପୁତ୍ର ଉପୁଜିଲା ।

